# ସୋର ଇତିହାସ

*ଲେଖକ :*
ଶ୍ରୀ ପ୍ରଫୁଲ୍ଲ କୁମାର ସିଂହ
ସା : ଭୟାସାହି, (ମୋବାରକପୁର)
ପୋ.: ସୋର, ଜି. : ବାଲେଶ୍ୱର

*ପ୍ରକାଶକ :*
ଶ୍ରୀ କରୁଣାକର ପାଣିଗ୍ରାହୀ
ସା/ପୋ: କେଦାରପୁର
ଭାୟା: ସୋର, ଜି: ବାଲେଶ୍ୱର

*ଅକ୍ଷରସଜ୍ଜା ଓ ମୁଦ୍ରଣ :*
ହରିପ୍ରିୟା ପ୍ରିଣ୍ଟର୍ସ
ସୋର, ବାଲେଶ୍ୱର

*ପ୍ରକାଶନ କାଳ :*
ଡିସେମ୍ବର ୨୦୧୦

ମୂଲ୍ୟ : ୩୫ ଟଙ୍କା ମାତ୍ର (ପଇଁତିରିଶ ଟଙ୍କା)

*ଉକ୍ତ ପୁସ୍ତକର ଲବ୍ଧଧନରୁ ବହିଛପା ଖର୍ଚ୍ଚ ବାଦ ଦେଇ ଉଦ୍‌ବୃତ୍ତ ଅର୍ଥରେ ସମାଜରେ ଉଚ୍ଚ ନୀତିସମ୍ପନ୍ନ, ଆଦର୍ଶ ଶିକ୍ଷକଙ୍କୁ ପ୍ରତିବର୍ଷ ସମ୍ବର୍ଦ୍ଧିତ କରାଯିବ ।*

Digitized by PPRACHIN, SOA



## ' ଉତ୍ସର୍ଗ '

ପୂଜ୍ୟ ବାପା ଓ ବୋଉଦ୍ୱୟ ।

ଆପଣମାନେ ଶୂନ୍ୟରେ ବାୟୁମଣ୍ଡଳରେ ଉପରେ ଥାଇ ଦେଖୁଥାନ୍ତୁ, ମୋ ପିଲାଦିନେ ଆପଣମାନେ ଆଶା କରିଥିବା ଅନୁଯାୟୀ ମୋର ପ୍ରଥମ ଅର୍ଘ୍ୟକୁ ଭକ୍ତିର ସହ ଆପଣମାନଙ୍କ ପାଦପଦ୍ମରେ ଉତ୍ସର୍ଗ କରୁଛି ।

ଆଦର ସହ ଗ୍ରହଣ କରିବେ ।

॥ ଇତି ॥

ସ୍ନେହର ପ୍ରଫୁଲ୍ଲ

Digitized by PPRACHIN, SOA



୰ ନିଧିକିଶୋର ମାହାନ୍ତିଙ୍କ ଦ୍ୱାରା ୧୯୮୭ ମସିହାରେ ପ୍ରସ୍ତୁତ
ପୂରାତନ ସୋରର ନକ୍ସା
(ସମ୍ପୂର୍ଣ୍ଣ ମାପ ତଥା ଆକାରରେ ସାମାନ୍ୟ ବ୍ୟତିକ୍ରମ ଥାଇପାରେ)

Digitized by PPRACHIN, SOA

# ମୋ କଥା...



କେତେକ ବନ୍ଧୁମାନଙ୍କ କହିବା ଅନୁସାରେ ମୋର ସାମ୍ବାଦିକ ଗୁରୁ ପ୍ରଫୁଲ୍ଲ ଭାଇ ସୋରର ଇତିହାସ ଲେଖିସାରିଥିଲେ ହେଁ, ପ୍ରକାଶ କରାଇ ଲୋକଲୋଚନକୁ ଆଣିବା ପାଇଁ ଅର୍ଥଅଭାବରୁ ଚିନ୍ତିତ ଥିବାର ଦେଖି ସମୁହ ସ୍ୱାର୍ଥ ତଥା ଆମ ସମସ୍ତଙ୍କ ଜନ୍ମମାଟି ସୋରର ଆତ୍ମଲିପିର ପରିଚୟ କରେଇବାର ଲକ୍ଷ୍ୟ ନେଇ ପାଣ୍ଡୁଲିପିଟିକୁ ଲୋକଲୋଚନକୁ ଆଣିବା ପାଇଁ ଏକ ସତ୍‌କର୍ମରେ ଆବଶ୍ୟକ ଯତ୍‌କିଞ୍ଚିତ୍ ଆର୍ଥିକ ସହାୟତା ଦେଇ ନିଜକୁ ଧନ୍ୟ ମନେ କରୁଛି ।

'ଜୀବନ ପଛେ ଯାଉ, ସମ୍ମାନ ଥାଉ<br>
ସମ୍ମାନ ଗଲେ ଥରେ ନଫେରେ ଆଉ ।'

॥ ଇତି ॥

ପ୍ରଫୁଲ୍ଲ ଭାଇଙ୍କ ଦ୍ୱାରା ସୃଷ୍ଟ<br>
ସମୟାନୁକ୍ରମେ ଆରମ୍ଭ, କାଳାନ୍ତର ଓ ଆଜିକାଲିର<br>
ଜଣେ ଛୋଟ ସାମ୍ବାଦିକ<br>
ବୀରେନ୍ଦ୍ର (ମହାଲିକ) ଦାସ

Digitized by PPRACHIN, SOA

# ପାଠକଙ୍କୁ ପଦେ



ବାଲେଶ୍ୱର ଜିଲ୍ଲାର ସେ ସମୟର ଜଣେ ନୀରବ ସାଧକ, ଏକାଧାରରେ ନିଷ୍ଠାବାନ, ସ୍ୱୟଂସେବକଳ ନୀତିବାନ , ଉଚ୍ଚ ନୈତିକ ସମ୍ପନ୍ନ, ରାଜନୈତିକ ନେତା (କେତେକ ରାଜନେତାଙ୍କୁ ମଧ୍ୟ ତିଆରି କରିଛନ୍ତି) ଜନସଂଘ, ଭାରତୀୟ ଜନତା ପାର୍ଟିର ଜିଲ୍ଲାର ପ୍ରଥମ ସଂଗଠକ (କ୍ଷମତା ଓ ଚୌକିର ଲାଳସାରେ କେବେ ଦଳ ବଦଳ କରିନାହାନ୍ତି) ବରିଷ୍ଠ ସାମ୍ବାଦିକ (କେତେକ ସାମ୍ବାଦିକଙ୍କ ସୃଷ୍ଟିଦାତା ଓ ପଥପ୍ରଦର୍ଶକ), ବିଭିନ୍ନ ସମ୍ବାଦପତ୍ରର ନିୟମିତ ନିର୍ଭୀକ ସ୍ତମ୍ଭଲେଖକ, ସମାଲୋଚକ, ଇତିହାସ ଲେଖକ ତଥା କବି, ଯିଏ 'ଇତିହାସ ଭୁଲ 'ହୋଇଯାଉଛି' ଶୀର୍ଷକ ଏକ ସ୍ତମ୍ଭ ସତରରୁ ତେଇଶ ଅକ୍ଟୋବର ୨୦୦୭ ସାପ୍ତାହିକ ଆରମ୍ଭ ଓ ୨୫-୧୧-୨୦୦୭ ରିଖ ଦୈନିକ 'କାଳାନ୍ତର'ରେ ପ୍ରକାଶ କରାଇ ସାରା ରାଜ୍ୟବାସୀଙ୍କ ଦୃଷ୍ଟି ଆକର୍ଷଣ କରାଇବା ସହିତ ସେମାନଙ୍କ ହୃଦୟରେ ଜାଗରଣ ଅଣାଇ ପାରିଥିଲେ ସେ ବନ୍ଧୁ ଶ୍ରୀଯୁକ୍ତ ପ୍ରଫୁଲ୍ଲ କୁମାର ସିଂହ । ଯାହା ଫଳରେ ଗତ ୧୬-୧୨-୨୦୦୭ ରିଖରେ ଇତିହାସର ସଂଶୋଧନ ନିମିତ୍ତ ତତ୍କାଳୀନ ମନ୍ତ୍ରୀ ବିଶ୍ୱଭୂଷଣ ହରିଚନ୍ଦନଙ୍କ ସଭାପତିତ୍ୱରେ ସର୍ବଭାରତୀୟସ୍ତରରେ ଏକ ଐତିହାସିକ ସମ୍ମିଳନୀ ଭୁବନେଶ୍ୱରସ୍ଥ ଜୟଦେବଭବନକୁ ଡକାଯାଇ ଇତିହାସ ଉପରେ ଆଲୋଚନା କରାଯାଇ ସଂଶୋଧନ ନିମିତ୍ତ ପ୍ରସ୍ତାବ ପାଶ କରାଯାଇଥିଲା । ସେ ସମ୍ବନ୍ଧୀୟ ସମ୍ବାଦ ଗତ ୧୭-୧୨-୨୦୦୭ ରିଖ ପ୍ରତ୍ୟେକ ସମ୍ବାଦ ପତ୍ରରେ ପ୍ରକାଶ ପାଇଥିଲା ।

ସୋରମାଟିର ସେହି ସମାଜସେବୀ ସନ୍ତାନ ପ୍ରଫୁଲ୍ଲ କୁମାର ସିଂହ (ପ୍ରଫୁଲ୍ଲ ଭାଇ ରୂପେ ପରିଚିତ) କିଛି ତଥ୍ୟ ଓ ଅଙ୍ଗେ ନିଭେଇଥିବା ଅନୁଭୂତିକୁ ନେଇ ତାଙ୍କର କଲମରେ ସୋର ସ୍ୱାଧୀନତା ପୂର୍ବର ଇତିହାସକୁ ପ୍ରକାଶ କରି ଆମ ସମସ୍ତଙ୍କ ଜନ୍ମମାଟି ସୋରକୁ ଦୁନିଆ ଆଗରେ ଚିହ୍ନେଇବାକୁ ଯାଇ ଏ ଅଞ୍ଚଳର ବହୁଦିନର ଆବଶ୍ୟକ ତଥା ଅଭାବକୁ ପୂରଣ କରିବା ସହିତ ଏ ମାଟିର ଭବିଷ୍ୟତ ସନ୍ତାନ ମାନଙ୍କ ପାଇଁ ପଥପ୍ରଦର୍ଶକ ହୋଇଛନ୍ତି । ଯାହାକି ସମସ୍ତଙ୍କ ଦ୍ୱାରା ଆଦୃତ ହେବ ବୋଲି ଆଶା କରାଯାଏ ।

ଏ ମାଟିର ଇତିହାସକୁ ଲେଖିବା ପାଇଁ ତାଙ୍କୁ ଅଧ୍ୟାପକ ଡଃ. ସନାତନ ନାୟକଙ୍କ ସମେତ ଆମ୍ଭେମାନେ ମଧ୍ୟ କେତେଜଣ କହିଥିଲୁ । ।। ଇତି ।।

ଆଇନଜୀବୀ, ସୋର

Digitized by PPRACHIN, SOA

# ସମସ୍ତଙ୍କ ଜାଣିବା ପାଇଁ



୧୯୮୭-୮୮ ମସିହାରେ ଅଧ୍ୟାପକ ସନାତନ ନାୟକଙ୍କ ରଙ୍ଗାହାଟ ଯାଇଥିଲି ପ୍ରବନ୍ଧରେ ସୋରର ଅତୀତ ଇତିହାସ ଉପରେ ସମ୍ୟକ ଧାରଣା ଲୋକଲୋଚନକୁ ଅଣାଇବା ପରେ ସୋର ସ୍ୱାଧୀନତା ପୂର୍ବର ପୂର୍ଣ୍ଣାଙ୍ଗ ଇତିହାସ ଉପରେ ଜାଣିବା ଲାଗି ସମସ୍ତଙ୍କ ମନରେ ଆଗ୍ରହ ପ୍ରକାଶ ପାଇ ଆସୁଥିଲା । କିନ୍ତୁ ଇତିହାସକୁ କେହି ଲେଖୁନଥିଲେ । ହେଲେ ସମସ୍ତଙ୍କ ଜାଣିବାରେ ସେ ସମୟରେ ଆମ ପିଲାଦିନ ଭୟେ ଯାଉନଥିଲେ କେହି, ନାମ ଥିଲା ତାର ଭୟାସାହିର ସେନାପତି ବଂଶର ଦାୟାଦ ଶ୍ରୀ ପ୍ରଫୁଲ୍ଲ କୁମାର ସିଂହ ବିକମ୍ବରେ ହେଲେବି ସୋର ଇତିହାସ ଲେଖି ଲୋକଲୋଚନକୁ ଆଣିବା ସହିତ ସୋର ଓ ସୋର ବାସୀଙ୍କର ସ୍ୱାତନ୍ତ୍ରୀୟତାକୁ ଦୁନିଆ ଆଗରେ ପ୍ରତିପାଦିତ କରିବାକୁ ଉଦ୍ୟମ କରିଥିବାରୁ ଆମ୍ଭମାନଙ୍କର ତଥା ସୋରବାସୀଙ୍କୀ ବହୁଦିନର ଆଶା ଆକାଂକ୍ଷା ପୂର୍ଣ୍ଣ ହେବାକୁ ଯାଉଛି ।

ତାଙ୍କରି ପିତାମାତା ଆଦରରେ ତାଙ୍କ ନାମ ରଖିଥିବା ପ୍ରଫୁଲ୍ଲ ନାଁକୁ ସାର୍ଥକ କରିବାକୁ ଯାଇ ସେ ତାଙ୍କ ଲେଖନୀ ମୁନରେ ସୋର ଇତିହାସ ରୂପକ ଯେଉଁ ଫୁଲଟିକୁ ଆଙ୍କିଦେଇଛନ୍ତି, ସେଇଟିକୁ ପ୍ରସ୍ଫୁଟିତ କରାଇ ଜୀବନର ସାଂଧ୍ୟ ସମୟରେ ଆପଣମାନଙ୍କ ହାତରେ ଅର୍ପଣ କରାଇବାରେ ସହାୟକ ହୋଇ ଏ ଜନ୍ମମାଟି ସୋର ପ୍ରତି ମୋର କର୍ତ୍ତବ୍ୟ ସମ୍ପାଦନ କରିବା ସହିତ ଆତ୍ମସନ୍ତୋଷ ଲାଭ କରୁଛି ।

॥ ଇତି ॥

ଆପଣଙ୍କର ବିଶ୍ୱସ୍ତ

ଶ୍ରୀ କରୁଣା କର ଅଗ୍ନିହୋତ୍ରୀ

ଅବସରପ୍ରାପ୍ତ ଶିକ୍ଷକ, ସୋର

Digitized by PPRACHIN, SOA

# ସମସ୍ତଙ୍କୁ ସମ୍ମାନ ଦେଇ



ମହାଶୟ/ ମହାଶୟା,

ସପ୍ରେମ ନମସ୍ତେ । ଅଧ୍ୟାପକ ଡଃ ସନାତନ ନାୟକ ବାଟରେ ଦେଖାହେଲେ, କେତେବେଳେ କେମିତି ଆମ ଘରକୁ ଆସିଲେ ସୋର ଇତିହାସଟିକୁ ଲେଖିଦେବା ଲାଗି ଏକାଧିକବାର କହିଆସୁଥିଲେ । ତାଙ୍କ ବ୍ୟତୀତ ଏ ଲେଖକଙ୍କର ଏମାଟିର କାହାଣୀ ବାରପଡ଼ା ନାୟିକାଣୀ ସୋର ନଗର ପାଳ ନଳିନୀକାନ୍ତ ମହାପାତ୍ରଙ୍କ ଦ୍ୱାରା ପ୍ରକାଶିତ ହୋଇଗଲା ପରେ ଆଇନଜିବୀ ଶ୍ରୀ ହରେକୃଷ୍ଣ ମହାନ୍ତି, ଶ୍ରୀ ଶଙ୍କର୍ଷଣ ପଣ୍ଡା, ଶିକ୍ଷକ ତଥା ଏ ବହିର ପ୍ରକାଶକ ଶ୍ରୀ କରୁଣାକର ପାଣିଗ୍ରାହୀ, ସାଧକ ଶ୍ରୀ ପ୍ରଭାକର ରଥ, ଶିକ୍ଷକ ନୃସିଂହ ପାଣିଗ୍ରାହୀ, ଜଡ଼ିଦା, ଶିକ୍ଷକ ପୁରୁଷୋତ୍ତମ ସାହୁ ସିଙ୍ଗାଖୁଣ୍ଟା, ସମାଜସେବୀ ଚିନ୍ତାମଣି ପଣ୍ଡା, ମୂଳକାୟଦା, ନାରାୟଣ ରଣା, ଅଡ଼ଙ୍ଗ ବଜାର ଆଦି ସୋରର ପୂର୍ଣ୍ଣାଙ୍ଗ ଇତିହାସଟିକୁ ପ୍ରକାଶ କରିବା ପାଇଁ ଏ ଲେଖକଙ୍କୁ କହିବା ସହିତ ପ୍ରେରଣା ମଧ୍ୟ ଦେଇଆସୁଥିଲେ ଏବଂ ସୋରର ଭବିଷ୍ୟତପିଢ଼ୀଙ୍କ ଜାଣିବା ଲାଗି କିଛି କରିବା ଉଚିତ୍ ବୋଲି ମଧ୍ୟ କହୁଥିଲେ । ତେଣୁ ସେମାନେ ସମସ୍ତଙ୍କ ପ୍ରତି ସମ୍ମାନ ଦେଇ କିଛି ତଥ୍ୟ ସଂଗ୍ରହ କରି ବାପା ଭଗବାନ ସିଂହ, ବୋଉ (ମାଆ) ଚନ୍ଦ୍ରପ୍ରଭା ଓ ପଦ୍ମିନୀ (ବଦ), ଗୋସାଁବାପା ଦୀନବନ୍ଧୁ ସିଂହ, ଜଗନ୍ନାଥ ସିଂହ, ମୂଳିସିଂହ, କେଶପୁରର ରାଜନ ଅପା (ଗୋସାଁମା), ମହାନ୍ତିଘର, ଜିତା ବଡ଼ବା, ଯଦୁଭାଇ, ହଗରା (ରଘୁନାଥ) ଆଦିଙ୍କ ପାଖରୁ ପିଲାଦିନେ ଶୁଣିଥିବା କଥାବସ୍ତୁକୁ ଓ ପିଲାଦିନେ ଖେଳିବାକୁ ମୋତେ ଦିଆଯାଉଥିବାର ବାଟୁଳିଖଡ଼ା ଧନୁ ଆଦିକୁ ସମ୍ବଳ କରି ତଥା ପରବର୍ତ୍ତୀ ସମୟରେ ରାଜନୈତିକ ସଂଗଠନ ଏବଂ ନିର୍ବାଚନ ଲଢ଼େଇରେ ଅବତୀର୍ଣ୍ଣ ହୋଇ ଗାଁରେ ବୁଲୁଥିବା ସମୟରେ ହରିସିଂହଙ୍କ ନାତି ଓ ଅର୍ଜୁନସିଂହଙ୍କ ପଣନାତି ବୋଲି କେଳାଭାଇ (ପ୍ରହଲ୍ଲାଦ ସାହୁ) ମୂଳେଶ୍ୱରଙ୍କଠାରୁ ଏ ଲେଖକଙ୍କର ପରିଚୟ ପାଇ ବୟସ୍କ ଲୋକମାନେ ଯେତେବେଳେ ଆଦରରେ ବସିବାକୁ ଆସନ ଦେଉଥିଲେ ସେଥିରେ ଏ ଲେଖକଙ୍କର ଆତ୍ମବିଶ୍ୱାସ ବଢ଼ିଯାଇଥିଲା ଏବଂ ଭୀମଙ୍କ କର୍ଣ୍ଣରେ କୃଷ୍ଣଙ୍କ ଶଙ୍ଖଧ୍ୱନି ପଡ଼ି ବାହୁରେ ଶତସିଂହର ବଳ ସଞ୍ଚାର ହୋଇଥିଲା ଭଳି ପିତାମାତା

Digitized by PPRACHIN, SOA

ଓ ଗୁରୁଜନମାନେ କହିଥିବା କଥାତକ ଲେଖକଙ୍କ କର୍ଣ୍ଣରେ ପ୍ରତିଧ୍ୱନିତ ହୋଇ ପୂର୍ବର ଇତିହାସତକ ମାନସପଟରେ ଖେଳିଯାଇଥିଲା ଏବଂ ସୋରର ଅବସ୍ଥିତିକୁ ସ୍ୱଚକ୍ଷୁରେ ଦେଖି ଓ ପୁରୁଣା ବୟସ୍କ ଲୋକଙ୍କଠାରୁ ବୁଝି ସବୁ ମେଳ ହୋଇଯାଉଥିବାରୁ ସତ୍ୟତାକୁ ଉପଲବ୍ଧିକରି କିଛି ଅନୁଭୂତିକୁ ନେଇ ଲୁପ୍ତହୋଇଯାଉଥିବା ସୋରର ଗୌରବମୟ ଇତିହାସକୁ ଲେଖି ଆପଣଙ୍କ ସାମନାକୁ ଆଣିବା ପାଇଁ ପ୍ରୟାସ କରୁଛି ।

ସୋର ନଗରପାଳ ଶ୍ରୀ ନଳିନୀକାନ୍ତ ମହାପାତ୍ର ଓ ତାଙ୍କ ପତ୍ନୀ ଶ୍ରୀମତୀ ରମଣୀ ସାହୁ, ମୂଳେଶ୍ୱର, ପାଇକସାହି, ଶ୍ରୀ ଅମରେନ୍ଦ୍ର ନନ୍ଦ, ମୋବାରକପୁର ବହିଟିକୁ ସୁନ୍ଦର କରି ପ୍ରକାଶ କରାଇବାରେ ଆନ୍ତରିକତାର ସହ ସାହାଯ୍ୟ କରିଥିଲେ ଓ ଶ୍ରୀ ପୂର୍ବାଂଶୁ ମହାନ୍ତି ବୟସରେ ସାନ ହେଲେ ମଧ୍ୟ ବାଟରେ ଦେଖାହେଲେ ସବୁବେଳେ କହୁଥିଲେ ମଉସା, ଆପଣ ଖବରକାଗଜରେ ଯେତେ ଲେଖି ପ୍ରକାଶ କରିଛନ୍ତି, ସବୁକୁ ବହି ଆକାରରେ ପ୍ରକାଶ କରିଯାଆନ୍ତୁ ଲୋକଙ୍କ ପାଇଁ ନହେଲେ ଆପଣଙ୍କ ପରେ ସେ ସବୁ ହଜିଯିବଯେ ।

ସୋରବାସୀଙ୍କର ସମୂହ ସମ୍ମାନ ସ୍ୱାର୍ଥ ଓ ଅଧିକ ଜାଣିବା ଲାଗି ଏ ଦିଗରେ ଅଧିକ ଗବେଷଣା ହେବା ଉଚିତ୍ । ଯଦି କେଉଁଠି କିଛି ଦୋଷ ତ୍ରୁଟି ରହିଯାଇଥାଏ ମୋ ଅଜ୍ଞାତରେ ତେବେ ଉଦାର ହୃଦୟରେ ମାର୍ଜନା କରିବାକୁ ଅନୁରୋଧ ।

॥ ଇତି ॥

ଆପଣଙ୍କର ବିଶ୍ୱସ୍ତ

Digitized by PPRACHIN, SOA



## କାଂଶବାଂଶଠାରୁ ନୀଳଗିରିଯାଏ

ଜୟ ଜୟ ଜୟ ଆହେ ଶ୍ରୀ ବାଟ ଗଣେଶ ! ପ୍ରଣାମ ଜାଣିବ ଖଣ୍ଡି ସକଳ କିଲ୍‌ବିଷ । ପ୍ରିୟତମ ପ୍ରିୟବନ୍ଧୁ ଆହେ ମେଘମାଧବ ଦେବତା ! ହସିଦେଇ ଭସି ପୁଣି କୁହ ଥରେ କଥା ! ଉଉରେଶ୍ୱର, କ୍ଷମେଶ୍ୱର, ଲିଙ୍ଗପଡ଼ା ଶିବ ! ହେ ପ୍ରିୟ ଦେବତା ! ଆମ ପ୍ରଣାମ ଜାଣିବ । ଦାଣ୍ଡ ଖେଡ଼ାଇ, ଦ୍ୱାରକାଶୁଣି ବାରପଡ଼ା ନାୟକାଣୀ - ପ୍ରଣାମ ଗୋ ମାତା! ତୁମେ ଯାର ମନ ଜାଣି । ଫୁଲ ସିନ୍ଦୂରରେ ମଣ୍ଡିତ ହୋଇ, ପୂଜା ପାଇ ଦିଅ ବର - ଦୂରିତ ଖଣ୍ଡନ କର ସୋରବାସୀଙ୍କର ।

ହସ ହସ ପ୍ରଫୁଲ୍ଲ କୁମାର - ଶୂରସେନ ରାଜାଙ୍କର ସେନାପତି ପଙ୍କଜ ସିଂହବଂଶର କୁମର । ଖୋଜି ଖୋଜି ବୁଝି ବୁଝି ହୋଇଛନ୍ତି ଯିଏ ଇତିହାସକାର । ସୋର ଇତିହାସ । ଲେଖିବାକୁ ନେଇଛନ୍ତି ଦିନ, ମାସ, ବର୍ଷ । ଇତିହାସ, କିମ୍ବଦନ୍ତୀ, ଦେଖାଶୁଣା କଥା, ବୋଉଠାରୁ ବଂଶଲତା ଆଈଠାରୁ ବ୍ୟଥା- ଜୀବନର ସୁଖଦୁଃଖସବୁ କରି ଠୁଳ, ଗଢ଼ିଛନ୍ତି ଇତିହାସ ମନ୍ଦିର ସୁନ୍ଦର । ପଢ଼ି ଏହା ସୋରବାସୀ ହୋଇବେ ଉତ୍‌ଫୁଲ୍ଲ - ଲେଖିଛନ୍ତି ଶ୍ରମ କରି ହୋଇ ସେ ପ୍ରଫୁଲ୍ଲ ।

ଦୂର ଅତୀତରେ ରାଜା ଚୋଳଗଙ୍ଗଦେବ - ସୋର ଜୟ କରିଥିଲେ ପ୍ରତ୍ନୁଷ ପ୍ରାଙ୍ଗନ । ସମୟ ସ୍ରୋତରେ - ମୋଗଲ ଯେ ରାଜୁତି କରିଲେ । ମୋଗଲ ଓ ମରହଟ୍ଟା ଲାଗିଲେ ଲଢ଼େଇ । ମରହଟ୍ଟା ସୋର ରାଜ୍ୟ ନେଲେ ଯେ ଛଡ଼ାଇ । ସୋରଠାରେ ଦୁର୍ଗ ସ୍ଥାପିଥିଲେ - ରାଇବଣିଆ ଦୁର୍ଗରୁ ସମ୍ପର୍କ ଯେ ରଖି ଶତ୍ରୁ ସଙ୍ଗେ ଲଢ଼େଇ ସେ କଲେ । ତାହା ପରେ ଇଂରେଜ ଶାସନ । ଇଂରେଜଙ୍କ ସଙ୍ଗେ ଯୁଝିଥିଲେ, ରାଜା ସୁରସେଣ । ଲଢ଼େଇରେ ରାଜାଙ୍କର ମୃତ୍ୟୁ ହୋଇଗଲା !

Digitized by PPRACHIN, SOA

ଛତ୍ରପୁର ରାଜବାଟି ଧ୍ୱଂସ ହୋଇଗଲା । ୧୮୦୩ ଖ୍ରୀଷ୍ଟାବ୍ଦରେ ଶାସନ ଯେ ଇଂରେଜ ଅଧୀନକୁ ଗଲା ।

ମରହଟାଙ୍କ ଶାସନ କାଳରେ - କାମ ଅନୁସାରେ ସ୍ଥାନ ନାମ ଦେଇଥିଲେ । 'ସାଧୁଆପଡ଼ା' ଯେ ଥିଲା ସାଧବଙ୍କ ଗାଆଁ । ଆଜି ମଧ୍ୟ ଅଛିସେହି ନାଆଁ । 'ଉଲ୍ଲାସଖଡ଼୍‌ଗପୁର' ନାମ ହୋଇଅଛି - ଉଲ୍ଲାସରେ ଖଡ଼୍‌ଗ ବିଦ୍ୟା ବୀର ଯେ ଶିଖନ୍ତି । 'ଲାଖବିନ୍ଧା ପଡ଼ିଆ' ରେ ଲକ୍ଷ୍ୟ ହୁଏ ସ୍ଥିର - ଆଜି ତାହା ଇତିହାସ ଦୂର ଅତୀତର । 'ଶିରାପୁର' 'ଶଙ୍ଖପୋଲ', 'ଅଡ଼ଙ୍ଗ ବଜାର', - 'ଛତ୍ରପୁର ', 'ଭୟାସାହି', ପୁଣି 'ରାଇପୁର' । କାମ ନେଇ ନାମ ସବୁ ହୋଇଥିଲା ଯାର । ରାଣୀ ପୋଖରୀରେ ସ୍ନାନ କରୁଥିଲେ ରାଣୀ - ଏ ନୁହେଁ କାହାଣୀ ।

କାଂଶବାଂଶ ଦକ୍ଷିଣରେ ଠାକୁର ରାଜାଙ୍କ ରାଜ୍ୟ ଆରମ୍ଭ ହୋଇଥିଲା । ତେଣୁ କରି ଶଙ୍ଖପୋଲ ଯେ ସୋର ରାଇଜର ପ୍ରବେଶ ଦ୍ୱାର ହେଲା । ଶତ୍ରୁ ଆସି ପହଞ୍ଚିଲେ ଶଙ୍ଖପୋଲଠାରେ - ପାଇକ ସର୍ଦ୍ଦାର ଶଙ୍ଖ ଫୁଙ୍କିବାକୁ କହିଥାନ୍ତି ଭଲେ । ଯୁଦ୍ଧ ପାଇଁ ସୋରସାରା ଲାଗଇ ଚମକ - ପାଇକେ ଯେ ସୋର ପରା ରାଜ୍ୟର ରକ୍ଷକ । ଧରି ପୁଣି ଖଣ୍ଡା, ଢାଲ, ଧନୁଶର - ହେଉଥିଲା ଯୁଦ୍ଧ ଘୋରତର । ଆଜି ମଧ୍ୟ ମାଟିତଳେ ପୋତିଯାଇଅଛି ମୂଳିସିଂଠାରେ - ଶତ୍ରୁସଙ୍ଗେ ମୁକାବିଲା ପାଇଁ ପଥର ବଙ୍କର । ଘାଟିସ୍ଥାନ ଗୁଡ଼ିକରେ ଥିଲା ଯେ ବିରାଟ ପୋଖରୀ - ପୋଖରୀ ହୁଡ଼ାରେ ଥିଲା କମାଣ ପ୍ରହରୀ । ସୋର ଚାରିପଟେ ଥିଲା ଏକୋଇଶି ପୋଖରୀ - ଯୁଦ୍ଧ ପାଇଁ ପୋଖରୀହୁଡ଼ାରେ କମାଣ ଯେ ଧରି ।

ସାମାଜିକ ଚଳଣି ଯେ ଅତୀତରେ ଥିଲା କି ସୁନ୍ଦର - ଅତିଥି ଆସିଲେ ଖୁସି ସାରା ପରିବାର । ମାଛ ମାଂସ ଘିଅ ଓ ଲହୁଣୀ - ଖାଇ ଓ ଖୁଆଇ ସର୍ବେ ସୁଖୀ ଥିଲେ ପୁଣି । ହାଟବାଟ ବାଣିଜ୍ୟ ବଜାର - ଧନଧାନ୍ୟ ପୂର୍ଣ୍ଣଥିଲା ଏ ସୋର ସହର । ଚାଟଶାଳୀ ପାଠ ପଢୁଥିଲେ -ଏ ସୋରର ପିଲାମାନେ ସେତେବେଳେ ଅବଧାନ ତୁଲେ । ପାଳୁଥିଲେ ପୂଜାପର୍ବ ଓଷାବାରବ୍ରତ । ସାରା ସମାଜରେ, କରୁଥିଲା ଆନନ୍ଦ ରାଜତ୍ୱ ।

ଶ୍ୟାମଳ ସୁନ୍ଦର ଭୂମି ଶସ୍ୟ ଭରପୂର- ଦିଶେ ମନୋହର । ମାର୍ଗଶିର ସୁନାଧାନ, ଚୈତ୍ର ଜହ୍ନରାତି - ପୁଲକାଏ ଛାତି । ଶିଆଳ, କୋକିଶିଆଳୀ, ବାଘ୍ୱା ଓ ହରିଣ - ହାତିଆଗଞ୍ଜଠାରେ ଯେ ହାତୀ ପଣପଣ । ମଙ୍ଗଳପୁର, ବାଲଙ୍ଗ, ଘାସୁଆର ଛଇ, ମନ ଦିଏ ମୋହି ।

Digitized by PPRACHIN, SOA

ନଦୀ ଆଉ ସମୁଦ୍ରର ଜଳ ଡଳଡଳ - ଆକାଶରେ ଚନ୍ଦ୍ରତାରା ଦିଶନ୍ତି ଉଜ୍ଜ୍ୱଳ । ନଇଁ ଯୋଡ଼ି କଇଁଫୁଲ ସଭା- ସତରେ ଯେମିତି ଅବା ମନ କିଣି ହୁଏ ମନଲୋଭା ।

ହାୟ! ସେ ତୁମେଇ ରଣା ନାରୀ ଗର୍ଭବତୀ - ଶ୍ରୀମତୀ କମ୍ ନୁହନ୍ତି । ଗାଉଁଲୀ ଭାଷାରେ ଥିଲେ ସୋହାଗୀ 'ପୋଇତି' । ସାଦ ଖାଇବାକୁ ସେ ଯେ ମନ କରିଛନ୍ତି । ଶ୍ୟାମଣିରୀ ନୀଳଗିରି ପାହାଡ଼ ଉପରେ - ଧନ୍ୟ ସେ ତୁମେଇ ରଣା ବସି ଖଡ଼ା ପକାଉଛି, ସମୁଦ୍ର ଆସିଲେ ମାଡ଼ି ଧରିବ ସେ ମାଛ, ନେଇ ଦେବ ଘରେ । ଖାଇବେ ଶ୍ରୀମତୀ - ମନ କରିଛନ୍ତି । ସହସ୍ର ତୁଣ୍ଡରେ, ଏ ଯେ କିମ୍ବଦନ୍ତୀ - ପ୍ରିୟ ସେ ପ୍ରଫୁଲ୍ଲ ସିଂହ ଲେଖି ତ ନାହାନ୍ତି । ଏ କିମ୍ବଦନ୍ତୀରେ - ସମାଜର ଚିନ୍ତା, ଚିତ୍ର ରହିଛି ସତରେ ।

ମନକିଣା ଚନ୍ଦ୍ରରାତି ଶୁଭ୍ର ଶରତରେ - ବସନ୍ତ ଦେବଙ୍କ ସଭା ଦେବଗିରି ପରେ ! ବସନ୍ତରେ ହସି ହସି ଲାଗେ ଫୁଲସଭା - ମର୍ତ୍ତ୍ୟଭ୍ରମଣକୁ, ଆସନ୍ତି କି ସ୍ୱର୍ଗର ମଘବା । ପ୍ରିୟତମା ଇନ୍ଦ୍ରାଣୀଙ୍କ ସଙ୍ଗେ - ରସବିନୋଦିନୀ ଯିଏ ପ୍ରଣୟ ପ୍ରସଙ୍ଗେ । ଏ କଥା ତ କାହିଁ - ଏ ଇତିହାସରେ ଆହା ! ଲେଖା ହୋଇନାହିଁ ।

ସୋର ମାନଚିତ୍ର - ଆଙ୍କିଛନ୍ତି ନିଧି କିଶୋର ମାହାନା, ଅମୀନ ପ୍ରବର । ତାଙ୍କର ଯେ ତୁଣ୍ଡପଡ଼ା ଘର । ଏହି ମାନଚିତ୍ର ପାଇଁ ଇତିହାସ ହୋଇଛି ସୁନ୍ଦର ।

ସତ୍ୟ ଓ ସୁନ୍ଦର ଏହି ସୋର ଇତିହାସ - ସ୍ୱାଧୀନତା ପୂର୍ବବର୍ତ୍ତୀ କଥା କରିଛି ପ୍ରକାଶ ।

ଗ୍ରୀସ୍ ଦେଶର ବନ୍ଧୁ ସେ ଐତିହାସିକହେରୋଡଟସ୍‌ଙ୍କ ସମ ବୁଲିବୁଲି ପ୍ରଫୁଲ୍ଲ କୁମାର ଗଢ଼ିଛନ୍ତି ଇତିହାସ, ପ୍ରେମଦେଇ, ଆପଣା ମାଟିର । ଏ କାର୍ଯ୍ୟରେ ସ୍ନେହଶ୍ରଦ୍ଧା ପ୍ରିୟତମା ଧର୍ମପତ୍ନୀ ଗୀତାଞ୍ଜଳିଙ୍କର- ସୋର ଇତିହାସକୁ ଯେ କରିଛି ସୁନ୍ଦର । ଭାଷା, ଭାବ, ଶୈଳୀ ଓ ଐତିହାସିକ ତଥ୍ୟରେ ଯେ 'ସୋର ଇତିହାସ' - ହୋଇଛି ସୁନ୍ଦର । ଏକଥା କି ସତ ନୁହେଁ - ହେ ପାଠକବନ୍ଧୁଗଣ ! ପଢ଼ି ସ୍ଥିର କର !

ସୋର ଇତିହାସର ଯେ ହେଉ ଜୟ ଜୟ - ଲେଖକଙ୍କ ଚଲାପଥ ହେଉ ଫୁଲମୟ ।

ଜ୍ୟୋତିର୍ଭୂଷଣ ପ୍ରଧାନ

ବାସୁଦେବପୁର

Digitized by PPRACHIN, SOA



*High Commission of the Republic of Trinidad and Tobago*
*6/25, Shanti Niketan*
*New Delhi - 110 021, India*

*[illegible]igh Commissioner*

August 17, 2004

**TO WHOM IT MAY CONCERN**

Over the past seven years, Dr. Chandra Shekhar Tiwary, a citizen of India has been conducting research into the roots of People of Indian Origin in the Indian Diaspora using the unique methodology of interviews and documentary in India. His work has led to the linking of several families with their long-lost loved ones across the world.

Dr. Tiwary represents 'Indi Root Foundation' a non-governmental organisation, [illegible] in helping People of Indian Origin in many ways. In 1996-97, Dr. Tiwary and Ms. [illegible] Deen, a researcher from Trinidad and Tobago, worked actively on a Government of India project. They were able to link maternal grand parent's family of the then Prime Minister, Hon'ble Mr. Basdeo Panday, besides many other families. For the emotional meeting of Mr. Panday and his Indian relatives, Dr. Tiwary was official interpreter.

May I therefore request that Dr. Chandra Shekhar Tiwary be given [illegible] assistance [illegible] district document centres or with housing and transport to continue this [illegible] international endeavour.



Pundit Maniedeo Persad, [illegible]

Chandra Shekhar Tiwary
PhD

**Indi Root Foundation**
*Tracing Roots ... Linking Families*

E-443, [illegible] Nagar, Delhi - [illegible]
E-mail : info@indiroots.com
Visit us at : www.indiroots.com

Digitized by PPRACHIN, SOA

ସମ୍ବାଦ, ୨୩ ଡିସେମ୍ବର, ୨୦୦୪

# ୧୫୦ ବର୍ଷ ତଳର ନିଖୋଜ ଯୁବକର ବଂଶ ଏବେ ବିଦେଶରେ ପ୍ରତିଷ୍ଠିତ

ବାଲେଶ୍ୱର, ତା ୨୨।୧୨ (ନି.ପ୍ର.)– ପ୍ରାୟ ୧୫୦ ବର୍ଷ ତଳେ ବାଲେଶ୍ୱର ଜିଲ୍ଲାର ସୋରୋ ଅଞ୍ଚଳରୁ ନିଖୋଜ ହୋଇଥିବା ଯୁବକ ବିଦେଶରେ ରହିବା ପରେ ତାଙ୍କର ବଂଶ ଏବେ ବିଦେଶରେ ପ୍ରତିଷ୍ଠିତ ବ୍ୟକ୍ତି ହୋଇପାରିଥିବା ଏକ ଚାଞ୍ଚଲ୍ୟକର ଖବର ସଂଗ୍ରହ କରିବା ପାଇଁ ସୋରୋ ସହରରେ ଜଣେ ଗବେଷକ ଆସି ପହଞ୍ଚିଥିବା ଜଣାପଡ଼ିଛି। ସେହି ହଜିଲା ସମ୍ପର୍କର ତଥ୍ୟ ଉନ୍ମୋଚନ ପାଇଁ ଗବେଷକ ଘର ଘର ବୁଲି ତଥ୍ୟ ସଂଗ୍ରହ କରିବା ଯୋଗୁଁ ସୋରୋ ଅଞ୍ଚଳରେ ଆଲୋଡ଼ନ ସୃଷ୍ଟି ହୋଇଛି।

ଖବର ନେବାରୁ ଜଣାପଡ଼ିଛି ଯେ ବ୍ରିଟିଶ ଶାସନ ସମୟରେ ଅଧିକାଂଶ ଭାରତୀୟ ନିଖୋଜ ହୋଇ କାଳକ୍ରମେ ଅନ୍ୟ ଦେଶର ବାସିନ୍ଦା ହୋଇ ପ୍ରତିଷ୍ଠିତ ହୋଇପାରିଛନ୍ତି। ସେହିପରି ସୋରୋ ମୁବାରକପୁରରେ ଥିବା 'ସିଂ' ପରିବାର ସହ ସମ୍ପର୍କ ରଖୁଥିବା ଲଣ୍ଡନରେ ପ୍ରତିଷ୍ଠିତ କେନି ସିଂଙ୍କ ପୂର୍ବପୁରୁଷଙ୍କ ମୂଳ ଜନ୍ମବୃତ୍ତାନ୍ତ ଉନ୍ମୋଚନ ପାଇଁ ଦିଲ୍ଲୀର ଇଣ୍ଡୋ–ରୋଟ୍ ଫାଉଣ୍ଡେସନର ମୁଖ୍ୟ ଡଃ ଚନ୍ଦ୍ରଶେଖର ତିୱାରୀ ୮ଦିନ ଧରି ସୋରୋରେ ଅବସ୍ଥାନ କରିଛନ୍ତି। ବିଭିନ୍ନ ତଥ୍ୟକୁ ଆଧାର କରି ଗତ ଦୁଇ ପରିବାର ସହିତ ସମ୍ପର୍କ ରହିଥିବାର ପ୍ରାଥମିକ ତଦନ୍ତରୁ ଜାଣିପାରିଛନ୍ତି। ଏତଦ୍‌ବ୍ୟତୀତ ଶ୍ରୀ ତିୱାରୀ ପ୍ରାୟ ୫୦ଜଣ ବିଦେଶୀଗତ ବ୍ୟକ୍ତିଙ୍କ ପୁରାତନ ସମ୍ପର୍କୀୟଙ୍କ ଖୋଜଖବର ନେଇ ସଫଳ ହୋଇଥିବା ଜଣାପଡ଼ିଛି। ତନ୍ମଧ୍ୟରୁ ତ୍ରିନିଦାଦର ପ୍ରଧାନମନ୍ତ୍ରୀ ମାନିଦେଓ ପ୍ରସାଦଙ୍କ ସମ୍ପର୍କୀୟମାନଙ୍କୁ ପଚରାଉଚରା କରି ସଫଳ ହେବା ପରେ ସେହି ଦେଶର ହାଇକମିଶନରଙ୍କଠାରୁ ପ୍ରମାଣପତ୍ର ମଧ୍ୟ ପ୍ରାପ୍ତ ହୋଇଛନ୍ତି। ବିଶେଷକରି ଗାଏନା, ତ୍ରିନିଦାଦ, ଫିଜି, ସୁରିନାମ ପ୍ରଭୃତି ଦେଶର ପ୍ରତିଷ୍ଠିତ ଅଧିକାଂଶ ମୂଳ ଭାରତୀୟ ବ୍ୟକ୍ତି ଏ ଦିଗରେ ତାଙ୍କର ସହଯୋଗ ଲୋଡ଼ିଛନ୍ତି। ଏହି ଗବେଷଣା ପାଇଁ ଶ୍ରୀ ତିୱାରୀଙ୍କୁ ସୋରୋ ତହସିଲଦାର ମଧୁସୂଦନ ମିଶ୍ର ସହଯୋଗ କରୁଥିବା ଜଣାପଡ଼ିଛି। ତେବେ ଏ ସମ୍ପର୍କରେ ସବିଶେଷ ତଥ୍ୟ ମିଳିପାରିନଥିବା ବେଳେ ଏଥିରେ ଶ୍ରୀ ତିୱାରୀ ସଫଳ ହେଲେ ବିଦେଶରେ ଉଚ୍ଚ କ୍ଷମତାସୀନ ପଦବୀରେ ରହିଥିବା ଏହି ଅଞ୍ଚଳର ଅଧିବାସୀଙ୍କ ସହିତ ଏକ ନୂତନ ସମ୍ପର୍କର ସେତୁ ସୃଷ୍ଟି ହୋଇପାରିବ ବୋଲି ଆଶା କରାଯାଉଛି।

Digitized by PPRACHIN, SOA

ପୂର୍ବର ଇତିହାସ ତଥା ଉକ୍ତ ପୁସ୍ତକର ପଛପାଖରେ ଦିଆଯାଇଥିବା ପ୍ରମାଣରୁ ଯାହା ଜଣାଯାଏ ଖ୍ରୀଷ୍ଟ ପରବର୍ତ୍ତୀ ୫ମ/୬ଷ୍ଠ ଶତାବ୍ଦୀରେ ସୋର ଏକ ସ୍ୱତନ୍ତ୍ର ଶକ୍ତିଶାଳୀ ରାଜ୍ୟ ଥିଲା । ଏହାର ଅଧିବାସୀ ଓ ରାଜା ସୁରବୀର ଖୁବ୍ ପ୍ରଭାବଶାଳୀ ଥିଲେ । ସେ ସମୟରେ ରାଜାଙ୍କ ନାମରେ ଏକ ସ୍ୱତନ୍ତ୍ର ମୁଦ୍ରା ପ୍ରଚଳିତ ହେଉଥିଲା । ଯାହାକି ସୋରର ଦକ୍ଷିଣ ପଶ୍ଚିମ ଦିଗକୁ ଥିବା ଗଣ୍ଡିବେଢ଼ରେ ମାଟିତଳୁ ସେ ସମୟରେ ପ୍ରଚଳିତ କିଛି ମୁଦ୍ରା ମିଳିଥିଲା । ସେ ସବୁ ଏବେ ସଂଗ୍ରହାଳୟରେ ଅଛି । ସେହି ମୁଦ୍ରାର ଏକପାଖରେ ମୁଣ୍ଡଟେକି ଶୋଇଥିବା ଷଣ୍ଢ ଓ ଅପର ପାର୍ଶ୍ୱରେ ଅସ୍ପଷ୍ଟ ହୋଇ ଯାଇଥିବା ରାଜାଙ୍କ ନାମ ଥିଲା । ଯେତେଦୂର ଅନୁମାନେ କରାଯାଏ ଷଣ୍ଢ ହେଉଛି 'ରାଜଚିହ୍ନ' ।

ଖ୍ରୀଷ୍ଟପର ୬ଷ୍ଠ-୭ମ ଶତିବ୍ଦୀରେ ସୋର ଉତ୍ତର ତୋଷାଳୀର ଏକ ସ୍ୱତନ୍ତ୍ର ଶାସନ ଡିଭିଜନ ଥିଲା । ଯାହାର ଶାସକ ଅଧିକାରୀଙ୍କୁ ସର୍ଫରାହାର କୁହାଯାଉଥିଲା । ଗୌଡ଼ର ରାଜା ଶଶାଙ୍କ କଙ୍ଗୋକୁ ଖ୍ରୀଷ୍ଟପର ୬୦୪ରେ ଅଧିକାର କଲାପରେ ୬୩୪ ରେ ତାଙ୍କ ମୃତ୍ୟୁ ପର୍ଯ୍ୟନ୍ତ ଶାସନରେ ଥିଲେ । ସେହି ସମୟରେ ସୋମଦତ୍ତ ଓ ଭାନୁଦତ୍ତ ଉତ୍ତର ତୋଷାଳୀରେ ଶଶାଙ୍କଙ୍କ ପ୍ରତିନିଧି ଅର୍ଥାତ୍ ଗଭର୍ନର ବା ସଫରାହାର ରୂପେ ଅବସ୍ଥାପତି ହୋଇ ଶାସନ କରୁଥିଲେ । ସେମାନେ ମଧ୍ୟ ସେତେବେଳ ରାଜପଦ ବା ବୃତ୍ତିର ସଙ୍କେତ ରୂପେ ତମ୍ବା ପ୍ଲେଟ୍ ବା ସନଦ ବ୍ୟବହାର କରୁଥିଲେ । ଯାହାକି ସୋରରୁ ମିଳିଥିଲା ।

ଉତ୍କଳର କେଶରୀ ବଂଶର ଶେଷ ରାଜା ସୁବର୍ଣ୍ଣ କେଶରୀଙ୍କର ରାଜତ୍ୱ ୯୯୫ରୁ ୧୦୪୨ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଉତ୍କଳର ଉତ୍ତର ପଟ ସୀମା ତଥା ସୋରର ଦକ୍ଷିଣରେ ଥିବା କାଂଶବାଂଶ ନଦୀଠାରୁ ଦକ୍ଷିଣର ଋଷିକୁଲ୍ୟା ନଦୀ ପର୍ଯ୍ୟନ୍ତ ପ୍ରାୟ ୧୫୦୦୦ ବର୍ଗମାଇଲ ପର୍ଯ୍ୟନ୍ତ ବ୍ୟାପ୍ତ ଥିଲା । ଉତ୍କଳ ଓ ସୋର ରାଜ୍ୟର ସୀମାକୁ ସେ ସମୟର ଚିରସ୍ରୋତା କାଂଶବାଂଶ ନଦୀହିଁ ଚିହ୍ନଟ କରୁଥିଲା । (ବିଭିଦରତ୍ନ ସଂଗ୍ରହ ପୃଷ୍ଠା ନଂ- ୫୮୧) ୧୦୪୨ ଖ୍ରୀଷ୍ଟାବ୍ଦ ପରେ ଚୋଳଗଙ୍ଗ ଦେବଙ୍କ ବଙ୍ଗଦେଶସ୍ଥ ମନ୍ଦାର ରାଜ୍ୟ ଓ ରତ୍ନପୁର ରାଜ୍ୟ ଆଦି ଜୟ ସମୟରେ ସୋରକୁ ଜୟ କରିନେଇଥିଲେ ।



Digitized by PPRACHIN, SOA

ତାପରେ ୧୫୬୮ ଖ୍ରୀଷ୍ଟାବ୍ଦରେ ମୁକୁନ୍ଦଦେବଙ୍କ ମୃତ୍ୟୁ ପରେ ବଙ୍ଗ ନବାବଙ୍କ ସେନାପତି କଳାପାହାଡ଼ ବହୁ ସୈନ୍ୟ ନେଇ ମୟୁରଭଞ୍ଜ, କେଉଁଝର ଜଙ୍ଗଲ ଦେଇ ଉତ୍କଳ ଆକ୍ରମଣ କରିବା ସମୟରେ ସୋରର ହିନ୍ଦୁ ରାଜତ୍ୱ ଲୋପ ପାଇ ଏକ ପ୍ରକାର ଅରାଜକତା ଦେଖା ଦେଇଥିଲା । ସେହି ଅରାଜକତା ସମୟରେ ଗୋବିନ୍ଦଦେବଙ୍କ ପ୍ରଧାନମନ୍ତ୍ରୀ ଜନାର୍ଦ୍ଦନ ଭୋଇ ବିଦ୍ୟାଧରଙ୍କ ପୁତ୍ର ରମାଇ ରାଉତରାୟ ଖୋରଧା ଅଧିକାର କରି ନିଜକୁ ଗଜପତିଙ୍କ ଉତ୍ତରାଧିକାରୀ ବୋଲି କହି ରାମଚନ୍ଦ୍ରଦେବ ନାମ ଧାରଣ କରି ଉତ୍କଳରେ ରାଜତ୍ୱ ଚଳାଇଥିଲେ । ପରେ ମୋଗଲ ସମ୍ରାଟ୍ ଆକବରଙ୍କ ସେନାପତି ତୋଡ଼ରମଲ୍ଲ ୧୫୮୦ରେ ଓ ରାଜା ମାନସିଂହ ୧୫୯୦ରେ ପଠାଣଙ୍କ ବିରୋଧରେ ଆକ୍ରମଣ କରି ସମଗ୍ର ଉତ୍କଳକୁ ମୋଗଲ ସାମ୍ରାଜ୍ୟ ସହିତ ମିଶାଇ ଦେଇଥିବାରୁ ଗଡ଼ଜାତ ଅଞ୍ଚଳକୁ ଛାଡ଼ି ସମୁଦ୍ର ଉପକୂଳବର୍ତ୍ତି ସୁବିସ୍ତୀର୍ଣ୍ଣ ଅଞ୍ଚଳକୁ ମୋଗଲବନ୍ଦି ବୋଲି କୁହାଗଲା । ସେହି ସମୟରେ ସୋର ମଧ୍ୟ ମୋଗଲବନ୍ଦ ଅନ୍ତର୍ଭୁକ୍ତ ହୋଇଥିଲା ।

ଏହାପରେ ମୋଗଲ ଓ ମରହଟ୍ଟାମାନଙ୍କ ମଧ୍ୟରେ ଯୁଦ୍ଧ ହେବାରୁ ୧୭୫୧ ମସିହାରେ ମରହଟ୍ଟାମାନେ ଉତ୍କଳର ଶାସନଭାର ପାଇଲେ । ସେହି ସମୟରେ ସୋର ମରହଟ୍ଟାମାନଙ୍କ ଶାସନାଧିକାରକୁ ଗଲା । ଯୁଦ୍ଧର ସୁବିଧା ଲାଗି ମରହଟ୍ଟାମାନେ ସୋରରେ ଏକ ଆଗୁଆ ଛାମୁଆ ଘାଟି ବା ଦୁର୍ଗ ସ୍ଥାପନ କରିଥିଲେ ଓ ଏହାକୁ ଜଣେ ମରହଟ୍ଟା ଫୌଜଦାର ଅଧିନରେ ରଖିଥିଲେ । ସେହି ଫୌଜଦାରଙ୍କୁ ସେ ସମୟରେ ରାଜା ବୋଲି କୁହାଯାଉଥିଲା । କିନ୍ତୁ ସେ ଓଡ଼ିଶାର ମରହଟ୍ଟା ସୁବେଦାର ଶିଓଭଟ୍ଟ ସାମନ୍ତ ରାଓଙ୍କ ଅଧିନରେ ଶାସନ କାର୍ଯ୍ୟ ବୁଝାବୁଝି କରୁଥିଲେ । ୧୭୫୧ ମସିହାରୁ ସୋରରେ ମରହଟ୍ଟାଙ୍କ ହିନ୍ଦୁ ରାଜତ୍ୱ ଆରମ୍ଭ ହୋଇଥିଲା । ପୂର୍ବରୁ ରାଜରାଜୁଡ଼ାଙ୍କ ଅଧିନରେ ଥିବା ସୋରର ପାଇକପୁଅମାନେ ଏହି ମରହଟ୍ଟା ରାଜତ୍ୱରେ ବି ପାଇକ ବା ଫୌଜରୂପେ କାର୍ଯ୍ୟ କଲେ ଓ ବେତନ ବାବଦକୁ ନିସ୍କର ଭୂସମ୍ପତ୍ତି ଉପଭୋଗ କଲେ । ମରହଟ୍ଟା ଶାସନ ସମୟରେ ସେହି କାଂଶବାଂଶ ନଦୀଟିକୁ ମଧ୍ୟ ସୋରର ଦକ୍ଷିଣ ପଟ ସୀମାରୂପେ ରଖାଯାଇଥିଲା । ସ୍ୱାଧୀନତାର



Digitized by PPRACHIN, SOA

ପରେ ଏବେ ବି ସେହି କାଂଶବାଂଶ ନଦୀ ସୋର ଥାନାର ଦକ୍ଷିଣ ପାଖ ସୀମା ରୂପେ ରହିଆସିଛି । ପୂର୍ବରେ ସମୁଦ୍ର, ପଶ୍ଚିମରେ ଦେବଗିରି ପାହାଡ଼, ଉତ୍ତରରେ ନୀଳଗିରିସ୍ଥ ଶେରଗଡ଼ ପର୍ଯ୍ୟନ୍ତ ବ୍ୟାପ୍ତ ଥିଲା । ସେ ସମୟରେ ଜମିଦାର ପ୍ରଥା ନଥିଲା ।

୧୭୮୦ ଆଡ଼କୁ ଏକଦା ମୟୂରଭଞ୍ଜ ରାଜାଙ୍କ ସୈନ୍ୟମାନେ ନୀଳଗିରି ଆକ୍ରମଣ କରିଥିଲେ । ସେ ସମୟରେ ନୀଳଗିରି ରାଜା ସୋରର ସାହାଯ୍ୟ ଆବଶ୍ୟକ କରିଥିବାରୁ ପଙ୍କଜ ସିଂହଙ୍କ ସେନାପତିତ୍ୱରେ ସିଂହାଖୁଣ୍ଟା, କୁଲଡିହା ଜଙ୍ଗଲ, ପାହାଡ଼ ଦେଇ ସୋରରୁ ଫୌଜ ଯାଇଥିଲେ । କପ୍ତିପଦା ନିକଟସ୍ଥ ସୋନ୍ ନଦୀ କୂଳରେ ଉଭୟ ପକ୍ଷଙ୍କ ମଧ୍ୟରେ ଯୁଦ୍ଧ ହୋଇଥିଲା । ଯୁଦ୍ଧରେ ମୟୂରଭଞ୍ଜ ସୈନ୍ୟଙ୍କ ପ୍ରଗତିକୁ ପ୍ରତିହତ କରାଇ ନୀଳଗିରିକୁ ଆକ୍ରମଣରୁ ରକ୍ଷା କରି ବିଜୟର ଧ୍ୱଜା ଉଡ଼ାଇ ସୋରର ଫୌଜ ଫେରିଥିଲେ । ସେ ସମୟରେ ମରହଟ୍ଟାଙ୍କ ପାଖରେ କମାଣ ଆଦି ଆଗ୍ନେୟାସ୍ତ୍ର ଥିଲା । କମାଣ ବ୍ୟତୀତ, ଯୁଦ୍ଧ ଅସ୍ତ୍ର ଭାବରେ ଖଣ୍ଡା, ଢାଲ, ତରୁଆଲ, ବର୍ଚ୍ଛା, ବଲମ (ଯାହା ଏବେ ଖଣ୍ଡାୟତ ଜାତିର ସତକ ରୂପେ ଶୋଭା ପାଏ ଓ ପୂଜା ପାଏ ।),



*(୧୮୦୩ ମଦିହା ପୂର୍ବରୁ ବ୍ୟବହୃତ କିଯତ ଅଂଶ ଅସ୍ତଶସ୍ତ୍ର ଯଥା : ଖଣ୍ଡା, ବଲମ୍, ବର୍ଚ୍ଛା ଆଦି ପାଇକପୁଅର ସତକ ଭାବେ ଏବେ ଶୋଭିତ ଓ ପୂଜିତ ।)*



Digitized by PPRACHIN, SOA

ଗୁପ୍ତି, ଧନୁଶର, କାଣ୍ଡ ବା ଧନୁଶର ଭଳି ବାଟୁଳି ଖଡ଼ା ଓ ବାଟୁଳି (ତ୍ରେତୟା ଯୁଗରେ ଯାହା ଭରତ ବ୍ୟବହାର କରୁଥିଲେ), ହାତୀ, ଘୋଡ଼ା ଆଦିଙ୍କୁ ଯୁଦ୍ଧକ୍ଷେତ୍ରରୁ ଘୋଡ଼ାଇବା ଲାଗି ଓ ରୁଦ୍ଧ ଦୁର୍ଗଦ୍ୱାରକୁ ଫଟାଇବା ଲାଗି ଭୂପୃଷ୍ଠ ଧନୁଶର ଆଦି ବ୍ୟବହାର କରାଯାଉଥିଲା । ଭୁପୃଷ୍ଠ ଧନୁ ଫାଳେ ବାଉଁଶରେ ତିଆରି ହୋଇଥାଏ । ତା'ର ଗୋଟିଏ ମୁଣ୍ଡକୁ ଭୁଇଁ ଉପରେ ରଖି ମଝିରେ ଆଣ୍ଠୁ ବା ଗୋଡ଼ ପାଦରେ ଭରା ଦେଇ ଅପର ମୁଣ୍ଡକୁ ହାତରେ ନୁଆଇଁ ଗୁଣ ଦିଆଯାଇଥାଏ । ବର୍ଚ୍ଛା ସଦୃଶ ବଡ଼ ବଡ଼ ଶରମୁନକୁ ନିଆଁରେ ପଚାଇ କିମ୍ବା ତା ଆଗରେ ଟୁଲ ତେଲ କନାର ନିଆଁ ହୁଳା ବାନ୍ଧି ଧନୁରେ ଗୁଣ ଦେଇ ଛଡ଼ାଯାଇଥାଏ । ହାତୀ, ଘୋଡ଼ାଙ୍କ ଦେହରେ ବାଜିଲେ ନିଆଁରେ ପୋଡ଼ିଯାଇ ସେମାନେ ନିଜ ନିଜ ସୈନ୍ୟଦଳକୁ ମାଡ଼ି ମକଚି ପଛକୁ ଫେରି ପଳାଇଥାଆନ୍ତି । ସେହିପରି ସେହି ଧନୁଶର ବ୍ୟବହାର କରି ଦୁର୍ଗର ରୁଦ୍ଧଦ୍ୱାରକୁ ମଧ୍ୟ ଫଟାଇ ଦିଆଯାଉଥିଲା । ବରାଦ ଦେଇ କୁମ୍ଭାରମାନଙ୍କଠାରୁ ବାଟୁଳି ଖଡ଼ାରେ ବ୍ୟବହାର ପାଇଁ ମାଟିର ବାଟୁଳିକୁ ଗଢ଼ି, ପୋଡ଼ି ଅଣାଯାଉଥିଲା । ସେହି ବାଟୁଳି ଗୋଡ଼ିକୁ ମଧ୍ୟ ଶତୃପକ୍ଷଙ୍କୁ ଘୋଡ଼ାଇବା ଲାଗି ବାଟୁଳି ଖଡ଼ାରେ ବ୍ୟବହାର କରି ଶତୃପକ୍ଷଙ୍କୁ ମରାଯାଉଥିଲା । ସେ ସମୟରେ ଯୁଦ୍ଧକୌଶଳ ତିନିପ୍ରକାର ଥିଲା । ୧- ସାମନା-ସାମନି, ମୁହାଁମୁହିଁ ଯୁଦ୍ଧ, ୨- ଛକାପଞ୍ଝା ଯୁଦ୍ଧ, ୩- ଅତର୍କିତ ଆକ୍ରମଣ, ଗରିଲା ଯୁଦ୍ଧ ବା ବଣୁଆ ଯୁଦ୍ଧ । ଯେମନି ହେଉ କଳେ ବଳେ କୌଶଳେ ଶତୃକୁ ପରାଜିତ କରିବାକୁ ସୋର ପାଇକପୁଅ ସିଦ୍ଧ ଥିଲେ ।

## ବିଷକନ୍ୟାର ଭୂମିକା :

ଶତୃପକ୍ଷର ସେନାପତି, ରାଜାମାନଙ୍କୁ ସେ ସମୟରେ ଫାନ୍ଦରେ ପକାଇ ବଶ କରାଇ ଶତୃପକ୍ଷର ସୈନ୍ୟମାନଙ୍କୁ ହଟାଇବାଲାଗି ଷଡ଼ଯନ୍ତ୍ର କରାଇବାରେ ସୁନ୍ଦରୀ ସୁନ୍ଦରୀ ଝିଅମାନଙ୍କୁ ପିଲାଟି ଦିନରୁ ତାଲିମ ଦେଇ ରାଜ୍ୟ ଓ ରାଜାଙ୍କ ପ୍ରତି ଅନୁପ୍ରାଣିତ ତଥା ଅନୁଗତ କରାଯାଉଥିଲା । ସେମାନଙ୍କ ହୃଦୟରେ ରାଜ୍ୟ ଓ ରାଜଭକ୍ତର ଭାବନା ଜାଗ୍ରତ କରାଯାଉଥିଲା । ପିଲାଟି ଦିନରୁ ଆୟୁର୍ବେଦିକ ବା କବିରାଜି ପଦ୍ଧତିରେ ସେମାନଙ୍କ ଶରୀର ଓ ରକ୍ତରେ



Digitized by PPRACHIN, SOA

ଧିରେ ଧିରେ ସାପ ବିଷ ପ୍ରୟୋଗ କରାଯାଉଥିଲା । ସେମାନଙ୍କ ପୁରା ଦେହକୁ ବିଷାକ୍ତ କରାଇ ଦିଆଯାଉଥିଲା ଓ ସେମାନଙ୍କୁ ସଦାସର୍ବଦା ଅପ୍ସରୀ ଭଳି ସଜାଇ ରଖାଯାଉଥିଲା । ସେମାନଙ୍କ ସୌନ୍ଦର୍ଯ୍ୟରେ ଆକୃଷ୍ଟ ହୋଇ କାମାଶକ୍ତ ହୋଇ ସେମାନଙ୍କୁ ଛୁଇଁ ଆଲିଙ୍ଗନ କଲେ ବା ଚୁମ୍ବନ ଦେଲେ ବା ସେମାନଙ୍କ ସହ ସହବାସ କଲେ ମୃତ୍ୟୁ ସୁନିଶ୍ଚିତ ହେଉଥିଲା । ସେମାନଙ୍କ ପ୍ରତି ଶତ୍ରୁପକ୍ଷର ରାଜା, ସେନାପତି, ମନ୍ତ୍ରୀ ଆଦି ଗୁରୁତ୍ୱପୂର୍ଣ୍ଣ ବ୍ୟକ୍ତିମାନଙ୍କୁ ଆକର୍ଷିତ କରାଇବାଲାଗି ସେମାନଙ୍କୁ ନୃତ୍ୟ, ସଙ୍ଗୀତ କଳାରେ ମଧ୍ୟ ତାଲିମ ଦିଆଯାଇ ନିପୁଣ କରାଯାଉଥିଲା । ସେଥିଲାଗି ସେମାନଙ୍କୁ ଉପଯୁକ୍ତ ଶିକ୍ଷକଙ୍କ ଦ୍ୱାରା ନଗରଠାରୁ ଦୂରରେ ଥିବା ନଟାପଡ଼ାରେ ରଖାଯାଇ ତାଲିମ ଦିଆଯାଉଥିଲା । ନଟାପଡ଼ା, ରଙ୍ଗପତି, ରାଧାବଲ୍ଲଭପୁର ସେ ସମୟରେ ଘୋର ଜଙ୍ଗଲ ଓ ପ୍ରାକୃତିକ ଶୋଭାରାଜିରେ ପରିପୂର୍ଣ୍ଣ ଥିଲା ଓ ଦୁର୍ଗମ୍ୟ ଥିଲା । ଏହି ବିଷକନ୍ୟାମାନଙ୍କୁ ମଧ୍ୟ ସେ ସମୟରେ ଆବଶ୍ୟକସ୍ଥଳେ ଗୁପ୍ତଚରରୂପେ ବ୍ୟବହାର କରାଯାଉଥିଲା । ଦେବଦାସୀ ଭଳି ସେମାନଙ୍କ ପଦବୀ ମଧ୍ୟ ରାଜଦାସୀ ଥିଲା । ସେ ସମୟରେ ଗୁପ୍ତଚର ବୃତ୍ତିରେ ନାରୀମାନଙ୍କର ଭୂମିକା ମଧ୍ୟ କମ୍ ନଥିଲା । ସେ ସମୟରେ ପୁରୁଷ ଗୁପ୍ତଚର ପ୍ରଚଳନ ବ୍ୟବସ୍ଥା ମଧ୍ୟ ଥିଲା ହେଲେ ସେମାନେ ସେତେବେଳେ ଆକ୍ରମଣ, ଯୁଦ୍ଧ ଆଦିକୁ ପରିଚାଳନା କରିବାରେ ମୁଖ୍ୟ ଭୂମିକାରେ ରହୁଥିବା ସେନାପତି, ରାଜା, ବାଦଶାହା ଆଦିଙ୍କ ଏତେ ନିକଟତର ହୋଇପାରୁନଥିଲେ, କିମ୍ବା ସେମାନଙ୍କୁ ସହଜରେ ବଶୀଭୂତ କରିବାରେ ସକ୍ଷମ ହୋଇପାରୁନଥିଲେ । ପୁରୁଷ ଗୁପ୍ତଚରମାନେ ବାହାରୁଥାଇ ବିଭିନ୍ନ ଛଦ୍ମବେଶରେ ବୁଲି କିମ୍ବା ସେମାନଙ୍କ ଉଆସରେ ବା ରାଜବାଟିରେ ଦାସ ରୂପେ ରହି ଯାହା ଗୁପ୍ତ ତଥ୍ୟ ସଂଗ୍ରହ କରୁଥିଲେ । ଯୁବକ ମାନଙ୍କୁ ଯୁଦ୍ଧ କଳା ଶିକ୍ଷା ଦେବାଲାଗି ସେ ସମୟରେ ପ୍ରତି ଗାଁରେ ଥିଲା ଆଖଡ଼ା ଘର । ସେଠାରେ ଖଣ୍ଡାଚାଳନା, ଗଦା, ମୁଦ୍ଗର ଚାଳନା, ତୀର ଲକ୍ଷ୍ୟ, ବର୍ଚ୍ଛାରେ ଯୁଦ୍ଧ, କୁସ୍ତି, ମଲ୍ଲ ଶିକ୍ଷା ଦିଆଯାଉଥିଲା । ସେ ଦିନର ଆଦବକାଇଦା, କାର୍ଯ୍ୟ କରିବାର ଶୈଳୀ, ଆଜିର ଆଧୁନିକ ପ୍ରଗତିଶୀଳ ଦୁନିଆରେ ସମ୍ପୂର୍ଣ୍ଣ ବଦଳି ଯାଇଛି । ଅତୀତ ଆଜି କାହାଣୀ



Digitized by PPRACHIN, SOA

ହୋଇ ଜନମୁଖରେ ରହିଛି । ଆଉ କେତେ ପୁରୁଷ ଗଲେ ଲୋକେ ବି ଭୁଲିଯାଇପାରନ୍ତି ସେ ସବୁକୁ ।

**ଯୋଗୀଙ୍କ ଦାୟିତ୍ୱ :**

ସୋରରେ ଯୋଗୀମାନଙ୍କର ଜମିଜମା ନଥିବାରୁ ସେମାନଙ୍କୁ ଲୋକେ ହୀନଦୃଷ୍ଟିରେ ଦେଖିଥାଆନ୍ତି । କିନ୍ତୁ ସେମାନେ ପ୍ରକୃତରେ ଅତୀତରେ ରାଜକର୍ମଚାରୀ ଥିଲେ । ଜମିବାଡ଼ି ଦିଆଗଲେ ସେ ସବୁର ଆବାଦ ବା ଚାଷ କରିବାରେ ସମୟ ନଷ୍ଟ କରି, ରାଜସେବା ବା ସେମାନଙ୍କ ଦାୟିତ୍ୱ ଓ କର୍ତ୍ତବ୍ୟରେ କାଳେ ହେଳା କରିବେ,ସେଥିଲାଗି ସେ ସମୟର ପ୍ରଥା ଓ ବ୍ୟବସ୍ଥା ଅନୁଯାୟୀ ସେମାନଙ୍କୁ ଜମି ଦିଆଯାଇନଥିଲା । ସେ ସମୟରେ ଗାଁ ଗହଳୀକୁ ଯିବାଆସିବା ଲାଗି ରାସ୍ତାର ସୁବିଧା ବା ଡାକର ବ୍ୟବସ୍ଥା ନଥିଲା । ତେଣୁ ରାଜ୍ୟରେ ରାଜ ଆଦେଶ ପ୍ରଚାର କରି ଲୋକଙ୍କୁ ଅବଗତି କରାଇବାର ଦାୟିତ୍ୱ ଓ ଗାଁ ଗହଳିରୁ ପ୍ରଜାମାନଙ୍କର ସୁଖ, ଦୁଃଖ,ଭଲମନ୍ଦ, ଷଡ଼ଯନ୍ତ୍ର ମେଳି ଆଦିର ଖବର ଆଣି ରାଜଦରବାରରେ ପହଞ୍ଚାଇବାର କର୍ତ୍ତବ୍ୟ ସେମାନଙ୍କ ଉପରେ ନ୍ୟସ୍ତ ଥିଲା । ସେମାନଙ୍କର ଜୀବିକାକୁ ସେମାନଙ୍କ ଦାୟିତ୍ୱ ଓ କର୍ତ୍ତବ୍ୟ ସହିତ ଯୋଡ଼ି ଦିଆଯାଉଥିଲା । ତେଣୁ ସେମାନେ ପ୍ରତିଦିନ ସକାଳୁ ଉଠି ଦୂରଦୂରାନ୍ତ ଗାଁକୁ ଯାଇ କେନ୍ଦରା ବଜାଇ ଲୋକଙ୍କ ଦୃଷ୍ଟି ଆକର୍ଷଣ କରାଇ ଗୀତ ଛଳରେ ରାଜଆଦେଶ ବା ବାର୍ତ୍ତା ପ୍ରଚାର କରୁଥିଲେ ଓ ପ୍ରତି ଗାଁର ଝିଅ, ବୋହୂ, ବୟସ୍କ ଲୋକଙ୍କଠାରୁ ରହସ୍ୟପୂର୍ଣ୍ଣ ଖବର ସଂଗ୍ରହ କରି ରାଜଦରବାରକୁ ଆଣୁଥିଲେ । ଏହା ସେତେବେଳେ ସେମାନଙ୍କ ଦାୟିତ୍ୱ ଓ କର୍ତ୍ତବ୍ୟ ଥିଲା । ସେମାନଙ୍କର ପରିବାର ଭରଣ ପୋଷଣ କରିବା ଲାଗି ପ୍ରଥା ତଥା ବ୍ୟବସ୍ଥା କରାଯାଇଥିଲା କି - ଯୋଗୀଙ୍କ ଥାଳରେ ଅନୁକୂଳ କଲେ ଶୁଭ ହୁଏ । ସମୟକ୍ରମେ ଏହା ଲୋକଙ୍କ ମନରେ ଆଧ୍ୟାତ୍ମିକ ଭାବନା ସୃଷ୍ଟି କରାଇ ଯୋଗୀଙ୍କୁ ନଫେରାଇ ଭିକ୍ଷା ଦେବା ପ୍ରଥା ଓ ପରମ୍ପରାରେ ପରିଣତ ହେଲା । ସେମାନେ ମଧ୍ୟ ଭିକ୍ଷାବୃତ୍ତିକୁ ଜୀବିକା ତଥା ପେଷା ଭାବରେ ଗ୍ରହଣ କରିନେଲେ ।



Digitized by PPRACHIN, SOA

ଏହାଦ୍ୱାରା ରାଜକର୍ତ୍ତବ୍ୟରେ ସେମାନଙ୍କୁ ରଖିବାରେ ରାଜକୋଷ ଉପରେ କୌଣସି ଚାପ ପଡୁନଥିଲା କି ରାଜକାର୍ଯ୍ୟରେ ହେଳା ହେଉନଥିଲା, ବରଂ ଯୋଗୀଥାଳରେ ନ ଦେଲେ କାଳେ ଯୋଗୀ କିଛି ସତ ମିଛ ଯୁଟାଇ ଦରବାରରେ କହି ଦଣ୍ଡିତ କରାଇବ । ସେ ଭୟରେ ଓ ପରମ୍ପରାକୁ ଭାଙ୍ଗିନପାରି ଲୋକେ ସେମାନଙ୍କ ଥାଳରେ ଭିକ ଦେଉଥିଲେ । ସେମାନଙ୍କର ବି କୁଟୁମ୍ବ ପ୍ରତି ପୋଷଣରେ ଅସୁବିଧା ହେଉନଥିଲା ।

୧୭୫୧ରୁ ୧୮୦୦୩ ମସିହା ପର୍ଯ୍ୟନ୍ତ ଉକ୍ରଳ ସମେତ ସୋରରେ ବରହଟ୍ଟା ରାଜତ୍ୱ ନିର୍ବିଘ୍ନରେ ଚାଲିଥିଲା । ୧୭୫୭ ଠାରୁ ୧୭୬୫ ପର୍ଯ୍ୟନ୍ତ ମରହଟ୍ଟାଙ୍କର ଓଡ଼ିଶାର ପ୍ରଥମ ସୁବେଦାର ଶିଓଭଟ୍ଟ ସାମନ୍ତ ରାଓ ଶାସନଭାର ଗ୍ରହଣ କରିଥିଲେ । ତାଙ୍କ ଶାସନକାଳ ମଧ୍ୟରେ ୧୭୬୨ ମସିହାରେ ସେ ଉକ୍ରଳ ସମେତ ସୋରରେ ନୂତନ କରି ବନ୍ଦୋବସ୍ତ କରାଇଥିଲେ । (ବିବିଧ ରତ୍ନ ସଂଗ୍ରହ ପୃଷ୍ଠା ନଂ- ୫୮୯)

୧୮୦୩ ମସିହା ସେପ୍ଟେମ୍ବର ତା ୨୨ ରିଖରେ ଇଂରେଜ କ୍ୟାପ୍‌ଟେନ୍ ମାରର୍ଗନଙ୍କ ନେତୃତ୍ୱରେ ଇଂରେଜ ଫୌଜ ବାଲେଶ୍ୱର ସହର ଅଧିକାର କରିନେଲେ । ତାପରେ ଆଗକୁ ନବଢ଼ି, ସେହିଠାରେ ରହି ଆସ୍ଥାନ ସୁଦୃଢ଼ କରାଇନେଲେ । ତାର ଏକ ସପ୍ତାହ ପରେ ଲେପ୍‌ଟେଣ୍ଟ ସ୍ଲେୟେଙ୍କ ନେତୃତ୍ୱରେ ଦୁଇ କମ୍ପାନୀ ଇଂରେଜ ଫୌଜକୁ ସୋର ଦଖଲ କରିବା ଲାଗି ପଠାଇଥିଲେ । କାରଣ ବାଲେଶ୍ୱର ସହିତ ସିଧା ସଳଖ କଟକ ଯୋଗାଯୋଗ ରକ୍ଷା କରିବାକୁ ଇଂରେଜମାନେ ଚାହୁଁଥିଲେ । ତାହା ମଝିରେ ସୋର ପ୍ରତିବନ୍ଧକ ସୃଷ୍ଟି କରାଉଥିବାରୁ ସୋରକୁ ଅଧିକାର କରିବା ସେମାନଙ୍କ ପକ୍ଷେ ନିହାତି ଆବଶ୍ୟକ ହୋଇ ପଡ଼ିଥିଲା ।

ସେ ସମୟରେ ସୋରରେ ମରହଟ୍ଟାଙ୍କ ପ୍ରତିନିଧିତ୍ୱ କରୁଥିଲେ ବା ରାଜା ଥିଲେ । ସୁରସେଣ ଛୋଟ ରାଜା ଓ ସୋରର ପାଇକ ବା ଫୌଜ ପଙ୍କଜ ସିଂହଙ୍କ ପୁଅ ଅର୍ଜୁନ ସିଂହ ଓ ଭୀମ ସିଂହଙ୍କ ସେନାପତିତ୍ୱରେ ପରିଚଳିତ ହେଉଥିଲେ । ଇଂରେଜମାନେ କମାଣ ବା ଆଗ୍ନେୟାସ୍ତ୍ର ନେଇ



Digitized by PPRACHIN, SOA

ସୋରକୁ ଦୁଇପଟୁ ସନ୍ନ୍ୟାସୀ ଆକ୍ରମଣ କରିବାରୁ ଉଭୟ ପକ୍ଷଙ୍କ ଭିତରେ ଦୀର୍ଘ ତିନିଦିନ ଧରି କାଂଶବାଂଶ କୂଳ ଜଙ୍ଗଲରେ, ବାଗୁଡ଼ି ପାହାଡ଼, ବାଳଙ୍ଗ, ମୂଳିସିଂ ଜଙ୍ଗଲ ଅଶ୍ୱଚରା ପିତାକଳିଆ ଆଦି ସ୍ଥାନରେ ସଂଘର୍ଷ ହୋଇଥିଲା । ସଂଘର୍ଷରେ ସେ ସମୟରେ ସୋରର ରାଜା ବା ଫୌଜଦାର ସୁରସେଣ ଛୋଟରାଓଙ୍କର ମୃତ୍ୟୁ ହୋଇଯାଇଥିଲା । ଛତ୍ରପୁରରେ ଥିବା ରାଜବାଟି ଇଂରେଜ ଫୌଜଙ୍କକମାଣ ମାଡ଼ରେ ଧ୍ୱଂସ ହୋଇଯାଇଥିଲା । ୧୮୦୩ ମସିହା ଅକ୍ଟୋବର ତା୩ରିଖରେ ସୋରର ସ୍ୱାଧୀନତା ଲୋପ ପାଇ ଇଂରେଜଙ୍କ ହାତକୁ ଶାସନ କ୍ଷମତା ଯାଇଥିଲା । ଇଂରେଜମାନେ ୧୮୦୩ରୁ ଓଡ଼ିଶାକୁ ପୂର୍ଣ୍ଣ ଦ଼ଖଲ କ଼ରିଥିଲେ ହେଁ ସୁରୁଖୁରୁରେ କ଼ର଼ ବା଼ ଟ୍ୟାକ୍ସ ଆଦା଼ୟ କ଼ରି ପାରୁନଥିଲେ । ମଝିରେ ମଝିରେ ବିଦ୍ରୋହ, ବିପ୍ଳବ ଅସହଯୋଗ ହେଉଥିଲା ବା ମୁଣ୍ଡ ଟେକୁଥିଲା । ଏଣୁ ସୁରୁଖୁରୁରେ କର ଆଦାୟ କରିବା ଲାଗି ୧୮୮୭ ମସିହାରେ ସୂର୍ଯ୍ୟାଅସ୍ତ ଆଇନ ବଳରେ କଲିକତାରେ ଜମିଦାରୀ ନିଲାମ କରାଯାଇ ଜମିଦାରୀ ପ୍ରଥା ସୃଷ୍ଟି କରାଯାଇଥିଲା ।

**ଜମିଦାରୀ ପ୍ରଥା ସୃଷ୍ଟି :**

ସୂର୍ଯ୍ୟାସ୍ତ ଆଇନ୍ ହେଉଛି, ସେ ସମୟରେ ଓଡ଼ିଶାରୁ କଲିକତାକୁ ଗମନାଗମରେ ରାସ୍ତା, ଯାନବାହାନ ଓ ଯୋଗାଯୋଗର ସୁବିଧା ନଥିଲା । ଲୋକେ ଚାଲି ଚାଲି ନଥୁବା ଘୋଡ଼ା, ଘୋଡ଼ାଗାଡ଼ି ଓ ଜଳପଥରେ ବହୁକଷ୍ଟରେ ଯାଉଥିଲେ । ସେହି ସମୟରେ ଇଂରେଜମାନେ ସୂର୍ଯ୍ୟାସ୍ତ ଆଇନ ପ୍ରଣୟନ କରିଥିଲେ । ସରକାରୀ ଦପ୍ତର କାର୍ଯ୍ୟ ଶେଷ ପରେ ଦିନ ଶେଷକୁ ସୂର୍ଯ୍ୟାସ୍ତ ପୂର୍ବରୁ ଯଦି କେହି କଚେରୀରେ ପହଞ୍ଚି ଜମିଦାରି ନିଲାମ ଧରିବାକୁ ଇଚ୍ଛା ପ୍ରକାଶ କରନ୍ତି, ସେମାନଙ୍କୁ ଶାଗ, ମାଛ ଦରରେ ରାଜ଼କୋଷକୁ ଯାହା ପାଇଲେ ସେଥିରେ ଜମିଦାରୀ, ଗୋଟିଏ, ଗୋଟିଏ ଦେଇଦେଉଥିଲେ । ସେହିଦିନଠାରୁ ସୋରରେ ଏବର ଜମିଦାରଙ୍କ ସୃଷ୍ଟି ହୋଇଥିଲା । ସେମାନେ ପ୍ରଜାଙ୍କଠାରୁ ସିଧାସଳଖ କର, ଟ୍ୟାକ୍ସ ଆଦାୟ କରି ଇଂରେଜ ଶାସକଙ୍କ ରାଜକୋଷରେ ଜମା ଦେଉଥିଲେ । ଜମିଦାରଙ୍କ ଜରିଆରେ ଇଂରେଜ କର ଓ ଟ୍ୟାକ୍ସ ଆଦାୟ କରୁଥିଲେ ।



Digitized by PPRACHIN, SOA

ସୋରରେ ଦୀର୍ଘ ତିନିଦିନ ଧରି ଯେପରି ସଂଘର୍ଷ ହୋଇଥିଲା ଓଡ଼ିଶାର ଅନ୍ୟ କୌଣସି ସ୍ଥାନରେ ଏତେ ଦିନ ଧରି ଇଂରେଜ ମାନଙ୍କ ସହିତ ସଂଘର୍ଷ ହୋଇନଥିଲା । ସଂଘର୍ଷରେ ବହୁ ଇଂରେଜ ଫୌଜ ମରିଥିଲେ । ଅପର ପକ୍ଷରେ ସେନାପତି ଅର୍ଜୁନ ସିଂହ, ଭୀମ ସିଂହଙ୍କ ସାନଭାଇ ଯୁଧିଷ୍ଠିର ଓରଫ ଦୁର୍ଲଭ ସିଂହଙ୍କୁ ଇଂରେଜମାନେ ବାନ୍ଧିକରି ନେଇଯାଇଥିଲେ । ଯୁଧିଷ୍ଠିର ସିଂହ ସେ ସମୟରେ ଅବିବାହିତ ଥିଲେ । ତାଙ୍କୁ ଦଣ୍ଡସ୍ୱରୂପ କଳାପାଣି ଜେଲକୁ ଏବର ଆଣ୍ଡାମାନ ନିକୋବର ଦ୍ୱୀପକୁ ପଠାଇ ଦିଆଯାଇଥିଲା । ଅନ୍ୟଦିଗରେ ସେନାପତି ବଂଶକୁ ମିଳିଥିବା ନିସ୍କର ଭୂସ୍ୱତ୍ୱକୁ ଇଂରେଜ ଶାସକ ବ୍ୟାଜାପ୍ତି କରିନେଇଥିଲେ । ବାକି ଅଳ୍ପ କେତେକ ନିସ୍କର ଜମି ରହିଯାଇଥିଲା । ଯାହା ସ୍ୱାଧିନତା ପରେ ସୋର ତହସିଲରେ କର ଧାର୍ଯ୍ୟ କରାଯାଇଛି ।

ଇଂରେଜମାନେ ଯେତେବେଳେ ଯୁଦ୍ଧ ବନ୍ଦୀମାନଙ୍କୁ ମୁକ୍ତି ଦେଲେ ସେ ସମୟରେ ଯୁଧିଷ୍ଠିର ସିଂହ ମଧ୍ୟ କଳାପାଣି ଦଣ୍ଡରୁ ମୁକ୍ତି ପାଇଥିଲେ । ହେଲେ ଭାରତ ସମେତ ଓଡ଼ିଶା ଇଂରେଜ ଶାସନାଧିନ ହୋଇଯାଇଥିବାରୁ, ନିଜର ସ୍ୱାଭିମାନକୁ ନେଇ ସେ ଆଉ ଭାରତକୁ ନଫେରି ବିଦେଶରେ ରହିଯାଇଥିଲେ । ବିଦେଶରେ ସେ ବିବାହ କରି ଘର ସଂସାର କରିଥିଲେ । ଏବେ ତାଙ୍କର ବଂଶୀୟ ଶ୍ରୀ ବେନି ସିଂହ ନିଜର ମୂଳ ବଂଶଧରମାନଙ୍କୁ ଖୋଜିବାକୁ ଓଡ଼ିଶା ଆସି କଟକରେ ପହଞ୍ଚିଥିଲେ ୧୯୯୨ ମସିହା ଜାନୁୟାରୀ ମାସରେ । ସେ ସମୟରେ ୧୯୯୧ ମସିହାରେ ଦଙ୍ଗା ଯୋଗୁଁ ସୋରରେ କର୍ଫ୍ୟୁ ଜାରି ହୋଇଥିଲା । ଏଣୁ ସେ ସୋରକୁ ଆସି ନପାରି 'ଦୈନିକ ସମାଜ' ପ୍ରଥମ ପୃଷ୍ଠାରେ ବଡ଼ ବଡ଼ ଅକ୍ଷର ଶିରୋନାମାରେ ସମ୍ବାଦ ପ୍ରକାଶ କରାଇ ଚାଲିଯାଇଥିଲେ । ଦୀର୍ଘଦିନର ନୀରବତା ପରେ ଗତ ତା ୧୭-୧୨-୨୦୦୪ ରିଖରେ ଦିଲ୍ଲୀର ଏକ ସ୍ୱେଚ୍ଛାସେବୀ ସଂଗଠନ 'ଇଣ୍ଡିରୋଟ ଫାଉଣ୍ଡେସନ୍' ର କର୍ମକର୍ତ୍ତା ଶ୍ରୀ ଚନ୍ଦ୍ରଶେଖର ତିୱାରୀଙ୍କୁ ତାଙ୍କର ବଂଶଧରମାନଙ୍କୁ ଖୋଜି ବାହାର କରିବା ଲାଗି ଦାୟିତ୍ୱ ଦେଇ ସୋର ପଠାଇଥିଲେ । ଶ୍ରୀ ତିୱାରୀ ଓଡ଼ିଶା ଆସି ବାଲେଶ୍ୱର ଜିଲ୍ଲାପାଳଙ୍କ ଅଫିସକୁ



Digitized by PPRACHIN, SOA

ଅନୁମତି ନେଇ ସୋର ଥାନାକୁ ଅବଗତ କରାଇ ସୋରସ୍ଥ ଆର୍. କେ. ଷ୍ଟୁଡ଼ିଓର ସୁରଭି-ଇନ୍-ଲଜ୍‌ରେ ୩/୪ ଦିନ ରହି ମୋବାରକପୁର ଭୟାସାହିସ୍ଥ ଖଣ୍ଡାୟତ ସିଂହ ପରିବାର ସହିତ ଯୋଗାଯୋଗ କରି, ଲେଖକଙ୍କ ଘରେ ଦୁଇଥର ଯଥା ତା ୧୮-୧୨-୨୦୦୪ ଶନିବାର ଓ ତା ୨୧-୧୨-୨୦୦୪ ମଙ୍ଗଳବାରରେ ଅତିଥି ହୋଇ ସମସ୍ତ ବିଷୟରେ ଆଲୋଚନା କରିଥିଲେ । ପରେ ତା ୨୩-୧୨-୨୦୦୪ ସମାଜ ର ୬ଷ୍ଠ ପୃଷ୍ଠା ତଥା ଅନ୍ୟାନ୍ୟ ଖବର କାଗଜରେ ତାଙ୍କର ମତ ପ୍ରକାଶ କରାଇ ଫେରିଯାଇଥିଲେ । ଶ୍ରୀ ତିୱାରୀଙ୍କର ପ୍ରକାଶିତ ମତ ଲେଖକଙ୍କ ଦୃଷ୍ଟିକୁ ଆସିବାରୁ ଲେଖକ ମଧ୍ୟ ତା ୯-୧-୨୦୦୫ ରିଖ କାଳାନ୍ତର ଓ ଅନ୍ୟ କାଗଜରେ ତାଙ୍କର ମତାମତ ସ୍ପଷ୍ଟ କରିଦେଇଥିଲେ ।

ଏଥିପୂର୍ବରୁ ଅଧ୍ୟାପକ ଡଃ. ସନାତନ ନାୟକ ଦିନରାତି ଅକ୍ଳାନ୍ତ ପରିଶ୍ରମ କରି ବହୁଆଡୁ ବହୁ ପୁରୁଣା ଲୋକମାନଙ୍କୁ ସାକ୍ଷାତ୍ କରି ସେମାନଙ୍କଠାରୁ ବୁଝି ତାଙ୍କ 'ରଜାହାଟ ଯାଇଥିଲି' ପ୍ରବନ୍ଧରେ ମାଦଳା ପାଞ୍ଜି ଭାଷାରେ ଯାହା ଲେଖି ଯାଇଛନ୍ତ, ସେନାପତିଙ୍କ ଭୟେ ଯାଉନଥିଲେ ଯହିଁ କେହି ନାମ ଥିଲା ତାର ଭୟାସାହି । ସେହି ଭୟାସାହିଟି ସୋରର ହୃଦୟ ମୋବାରକପୁରସ୍ଥ ହାଇସ୍କୁଲ ଛକ ନିକଟରେ ଅବସ୍ଥିତ । ଦିଲ୍ଲୀରୁ ଆସିଥିବା ଚନ୍ଦ୍ରଶେଖର ତିୱାରୀ ମଧ୍ୟ ସେହି ସ୍ଥାନ ଓ ବଂଶକୁ ନିର୍ଣ୍ଣୟ କରି ତାଙ୍କର ରିପୋର୍ଟ ଲେଖିଥିଲେ ।

ସୋରକୁ ଶତ୍ରୁ ଆକ୍ରମଣରୁ ରକ୍ଷା କରାଇବା ଲାଗି ସେ ସମୟର ସାମରିକ ବିଷାରଦମାନେ କି ପ୍ରକାର ସାମରିକ ବିହ୍ୱ ରଚନା କରାଇଥିଲେ, ତାହା 'ଏ ମାଟିର କଥା କହଇ, କିଛି ଦାଣ୍ଡ ଖେଡ଼ାଇ'ରେ ମା' ଦାଣ୍ଡ ଖେଡ଼ାଇଙ୍କ ଇତିବୃତ୍ତିରେ ଉଲ୍ଲେଖ ଅଛି ।

ଖ୍ରୀଷ୍ଟପର ୬୦୦ ଶତାବ୍ଦୀଠାରୁ କେତେ ଯେ ଉତ୍‌ଥାନ ପତନ, ଘାତ ପ୍ରତିଘାତ, ଯୁଦ୍ଧ ଓ ସଂଘର୍ଷ ମଧ୍ୟରେ ଏ ମାଟି ଓ ଏଠାକାର ମଣିଷ ସମାଜ ଗତି କରି ସୁଦୀର୍ଘ ୨୦୧୦ ମସିହା ସୁଦ୍ଧା ପହଞ୍ଚିଲେଣି । ଏହି ଦୀର୍ଘ ସମୟ ମଧ୍ୟରେ କେତେ ଯେ ବର୍ଷ ବିତିଗଲାଣି, କେତେ ଯେ ପୁରୁଷ ଗହଳୀଳା



Digitized by PPRACHIN, SOA

ସମ୍ବରଣ କରିଗଲେଣି ତାହାର କଳନା ନାହିଁ କି ହିସାବ କେହି ରଖିନାହାନ୍ତି । ବହିଗଲା ନଈରେ ପଟୁମାଟି ଭଙ୍ଗା ପଡ଼ିଗଲା ପରି ବିଗତ ୨୦୦୦ ବର୍ଷ ମଧ୍ୟରେ ସତ୍ୟ ଲୁଚି ଯାଇ କେତେ ଯେ କପୋଳକଳ୍ପିତ, ମନଗଢ଼ା କିମ୍ବଦନ୍ତୀ, ଜନଶ୍ରୁତି ଜନ ସମାଜରେ ସୃଷ୍ଟି ହୋଇଗଲାଣି, ତାହା ଭିତରୁ ସତ ମିଛକୁ ଖୋଚିବାହାର କରିବା କଷ୍ଟକର ହୋଇ ପଡୁଛି । ସୋର ଓ ସୋରବାସୀଙ୍କର ଅତୀତର ଟେକ, ଗର୍ବ-ଗୌରବର ସଙ୍କେତ ବହନ କରୁଥିବା ଶିରାପୁରସ୍ତ ଦାଣ୍ଡଖେଡ଼ାଇଙ୍କୁ ସମୟସ୍ରୋତର ଗତିକ୍ରମେ ଆଜି ଆଣି ଅପଭ୍ରଂଶ କରାଇ ଜନଶ୍ରୁତିରେ ଦାଣ୍ଡଖେଳାଇରେ ରୂପାନ୍ତରିତ କରିଦେଇ ସାରିଲେଣି । ଫଳରେ ସତ୍ୟତା ଉପରେ ଭଙ୍ଗା ପଡ଼ି ଲୁଚି ଯାଉଛି ! ସତ୍ୟତା ହଜିଯାଉଛି । ଏହା ଅତି ଦୁଃଖଦାୟକ । ଏଣୁ ସୋରର ସ୍ୱାତନ୍ତ୍ରୀୟତାକୁ ନେଇ ଐତିହାସିକ ତଥା ଗବେଷକମାନଙ୍କ ପକ୍ଷେ ଅଧିକ ଗବେଷଣାର ଆବଶ୍ୟକତା ରହିଛି । ସୋରର ଇତିହାସକୁ ଛାଡ଼ି ଓଡ଼ିଶାର ଇତିହାସ ପୂର୍ଣ୍ଣାଙ୍ଗ ହୋଇନପାରେ । ଓଡ଼ିଶା ଇତିହାସରେ ସୋର ତଥା ଶିରାପୁରବାସୀଙ୍କ ପାଇଁ ସ୍ୱତନ୍ତ୍ର ସମ୍ମାନଜନକ ସ୍ଥାନ ରଖିବା ପାଇଁ ଏବେ ସମୟ ଉପଗତ । ସେଥିଲାଗି କେବଳ ସମସ୍ତଙ୍କର ଆନ୍ତରିକପୂର୍ଣ୍ଣ ସହଯୋଗ ଓ ଉଦ୍ୟମର ଏକାନ୍ତ ଆବ୍ୟକତା ଅଛି ।

ସମସ୍ତେବୁଝିରଖିବା ଉଚିତ୍ ଅତୀତରେ ସୋରବାସୀମାନେ ବ୍ରିଟିଶ ଶାସକଙ୍କୁ ଏ ମାଟିରୁ ତଡ଼ିବା ପାଇଁ ସଂଗ୍ରାମ କରି ରାଜକୋଷରୁ ସଂଗ୍ରାମୀ ଭତ୍ତା ଉପଭୋଗ କରୁନାହାନ୍ତି । ବ୍ରିଟିଶ ଶାସକଙ୍କୁ ଏ ମାଟିରେ ପ୍ରବେଶ କରାଇ ନଦେବା ଲାଗି ତଥା ଏ ମାଟିର ପୂର୍ବ ସ୍ୱାଧୀନତାକୁ ସେମାନଙ୍କ ହାତକୁ ଟେକି ନଦେବାଲାଗି ପ୍ରାଣମୂର୍ଚ୍ଛା ସଂଗ୍ରାମ କରି ସର୍ବହରା ହୋଇଯାଇଥିଲେ । ଅତୀତର ସେହି ଶିକ୍ଷା, ସଂସ୍କୃତି, ପୂର୍ବର ଐତିହ୍ୟ, ଗୌରବ, ସୌରଭ, ଗାରିମା ଆଦିର ସ୍ୱାତନ୍ତ୍ରୀୟତାର ମହତ୍ୱକୁ ବଜାୟ ରଖିବା ପରିବର୍ତ୍ତେ, ପର ମୁହୂର୍ତ୍ତରେ ପଦାଘାତ କରି ସୃଷ୍ଟି କରାଯାଉଥିବା ଧ୍ୱଂସସ୍ତୁପ ଉପରେ ଚାଲିଥିବା ଆଜିର ଏ ପାଶ୍ଚାତ୍ୟ ସଭ୍ୟତା ଅଭିମୁଖି ଧାବମାନ ସମାଜରେ କିଏ ବୁଝିବ ବିଲୁପ୍ତ ହୋଇ ଯାଉଥିବା ଏକ ବଂଶ ଓ ସୋର ଜନସମାଜର ହୃଦୟ ଗହ୍ୱରରେ ମର୍ମଭେଦି ଦରଦକୁ । ଓଡ଼ିଶାର



Digitized by PPRACHIN, SOA

ଅନ୍ୟ କେଉଁଠି ଇଂରେଜ ସୈନ୍ୟମାନଙ୍କ ସହିତ ଓଡ଼ିଆ ପାଇକଙ୍କର ଆଖି ଦୃଶିଆ ଯୁଦ୍ଧ ହୋଇଥିବାରେ ଇତିହାସ ନୀରବ । ହରିପୁରଠାରେ ସାମାନ୍ୟ କିଛି ସଂଘର୍ଷ ହୋଇଥିଲା । କେବଳ ସୋରମାଟିରେ ଯୁଦ୍ଧ ହୋଇଥିଲା । ଏହି ଯୁଦ୍ଧରେ ଇଂରେଜମାନଙ୍କର ବହୁ ସୈନ୍ୟ ନିହତ ହୋଇଥିଲେ । *(ବିବିଧ ରତ୍ନ ସଂଗ୍ରହ)*

***



Digitized by PPRACHIN, SOA

# ଏ ମାଟି ଶୂରର କାହାଣୀ

## ମା' ବାରପଡ଼ା ନାୟିକାଣୀ

ଅତୀତରେ ସୁର ବୀର ସୁତ (ପୁତ୍ର)ପୂର୍ଣ୍ଣ ଥିଲା, ଏଣୁ ଏହାର ନାମ ଥିଲା ସୁର । ବିଦେଶୀମାନଙ୍କର ତୃଟିପୂର୍ଣ୍ଣ ଅସ୍ପଷ୍ଟ ଭାଷାଗତ ଉଚ୍ଚାରଣ ଯୋଗୁଁ ସୁର ଆଜି ଦିନରେ ସୋରରେ ରୂପାନ୍ତରିତ ହୋଇଯାଇଛି । ଯେପରି ଭାରତ ଆଜି ଇଣ୍ଡିଆ ହୋଇଛି । ସେ ସବୁ ଯାହାହେଉ ସୋର ଅଥବା ସୁର ହେଉ ନାମକରଣକୁ ନେଇ ଏବେ ଅଯଥା ଆଲୋଚନା ବା ଯୁକ୍ତିତର୍କ କରିବାର ସମୟ ଓ କ୍ଷେତ୍ର ନାହିଁ । ସୋର ଅଞ୍ଚଳର ଲୋକମାନେ ଆଗ ନିଜ ଅତୀତ, ପୂର୍ବପୁରୁଷମାନଙ୍କ ବୀରତ୍ୱପୂର୍ଣ୍ଣ ଇତିହାସ ସମ୍ବନ୍ଧରେ ଅବଗତ ହେବା ସହିତ ବିଷଦ ଜ୍ଞାନ ଆହରଣ କରିବା ଉଚିତ୍ । କାରଣ ଏହା ସେମାନଙ୍କର ଗର୍ବ, ଗୌରବ, ସୌରଭର ବିଷୟ ଓ ନିଦର୍ଶନ । ଯେଉଁ ଅଧିବାସୀମାନଙ୍କର ନିଜ ଅଞ୍ଚଳର ଗୌରବ,ସୌରଭର ସ୍ୱାନ୍ତ୍ରୀୟତା ସମ୍ବନ୍ଧରେ ଜ୍ଞାନନଥାଏ ସେ ଅଞ୍ଚଳର ଅଧିବାସୀମାନେ ପୌରୁଷହୀନ, ଅଜ୍ଞାନୀ ବୋଲି ବିବେଚିତ ହୋଇଥାନ୍ତି । ତେଣୁକରି ସୋରବାସୀ ନିଜ ନିଜ ଅତୀତ ଇତିହାସ ବିଷୟରେ ଜାଣି ରଖିବା ଉଚିତ୍ ।

ଏଠାରେ ମା' ବାରପଡ଼ା ନାୟିକାଣୀ(ଠାକୁରାଣୀ)ଙ୍କ ବିଷୟରେ ଅଭଗତ କରାଇବା ଲାଗି ଏ କଲମ ଯାଉଛି । ଗତ ୧୮୦୩ ମସିହା ମହାସମରରେ ସୁରରୁ ହିନ୍ଦୁ ରାଜତ୍ୱ ଲୋପପାଇ,ଇଂରେଜମାନଙ୍କ ଦ୍ୱାରା ଦଖଲ ହୋଇ ସୋର ନାମରେ ନାମତି ହୋଇଆସୁଛି । ୧୮୦୩ ପୂର୍ବରୁ ୧୭୫୧ଠାରୁ ସୁର ରାଜ୍ୟର ଗଡ଼ଚଣ୍ଡୀ ଥିଲେ ଏବର ମା' ବାରପଡ଼ା ଠାକୁରାଣୀ । ସେ ସମୟର ସୁର'ବା ବୀରପୁତ୍ର (ପାଇକମାନେ) ଯୁଦ୍ଧ କରିବାକୁ ଯିବାପୂର୍ବରୁ ଏଠାରେ ବସବାସ କରୁଥିବା ୧୨ଟି ପଡ଼ା ବା ଗ୍ରାମର ବୀର ପାଇକମାନେ ମା' ବାରପଡ଼ା ଦେବୀଙ୍କୁ ପୂଜା ଦେଇ ବିଜୟ ପାଇଁ ବରପ୍ରାପ୍ତ ହେବା ସହିତ ଶପଥ ନେଇ ଯୁଦ୍ଧ ଯାତ୍ରା ଆରମ୍ଭ କରୁଥିବାରୁ ନାମ ଥିଲା ବାରପଡ଼ା ନାୟିକାଣୀ । ସୋର ଗ୍ରାମ ଗୁଡ଼ିକ ହେଲା - ୧



Digitized by PPRACHIN, SOA

ମୂଳେଶ୍ୱର(ତତ୍‌କାଳୀନ ପାଇକସାହି), ୨- ମୋବାରକପୁର (ଭୟାସାହି), (ଏଠାରେ ସେନାପତିଙ୍କ ନିବାସ ଥିବାରୁ, ଭୟରେ ଯାଉନଥିଲେ ଯହିଁ କେହି, ନାମ ଥିଲା ଭୟାସାହି), ୩- ଖଡ଼୍‌ଗ ବା ଖଣ୍ଡାଧାରୀ ବାହିନୀ ଥିବା ଗ୍ରାମର ନାମ ଖଣ୍ଡାସାହି । ୪- ଧନୁସର ବାହିନୀ ଥିବା ଗ୍ରାମ କୋଦଣ୍ଡପୁର (ରାମଙ୍କ ଧନୁ କୋଦଣ୍ଡର ନାମ ଅନୁସାରେ ନାମ ହୋଇଥିଲା ), ୫- ଅଶ୍ୱ ବା ଘୋଡ଼ା ବାହିନୀ ଥିବା ଗ୍ରାମ ଘୋଡ଼ାସାହି, ୬- କମାଣ ବାହିନୀ ଥିବା ସ୍ଥାନର ନାମ କମାରପୁର, ୭- ଉତ୍ତର ଦ୍ୱାର ରକ୍ଷଣାବେକ୍ଷଣ ପାଇଁ ସଦା କମର ଭିଡ଼ି ପ୍ରସ୍ତୁତ ରହୁଥିବା ପାଇକଙ୍କ ଗ୍ରାମର ନାମ କମରପୁର, ୮- ବ୍ୟବସାୟ ପେଣ୍ଠ ସ୍ଥାନ ଅଡ଼ଙ୍ଗବଜାର, ୯- ରାଜଛତ୍ର ଥିବା ସ୍ଥାନର ନାମ ଛତ୍ରପୁର, ୧୦- ରାଜଦପ୍ତର ଥାଇ ଲୋକଙ୍କୁ ରାୟ ଦିଆଯାଉଥିବାରୁ ସେ ସ୍ଥାନର ନାମ ରାଇପୁର, ୧୧- ଗୋପିନାଥପୁର, ୧୨- ଲିଙ୍ଗପଡ଼ା (ଶିବଲିଙ୍ଗ ଥିବାରୁ), ୧୩- ଉତ୍ତରେଶ୍ୱର, ୧୪- ବାଲିଆଗଞ୍ଜ, ୧୫- ନଟାପଡ଼ା, ୧୬- ଗଙ୍ଗପତି, ୧୭- ରାଧାବଲ୍ଲଭପୁର, ୧୮- ସରଣଙ୍ଗ, ୧୯- ବ୍ରାହ୍ମଣସାହି, ୨୦- ରାଉତରାୟପୁର, ୨୧- ଇଟୁଆ ଆଦି ଗ୍ରାମର ଲୋକମାନେ ପୂଜା କରିବାକୁ ମା' ବାରପଡ଼ାଙ୍କ ବିଜେସ୍ଥଳୀକୁ ଆସୁଥିଲେ ତଥା ଯାତ୍ରାରେ ଯୋଗ ଦେଉଥିଲେ । ଏବେବି ସେ ପ୍ରଥା ରଖିଆସୁଛନ୍ତି । ମା'ଙ୍କର ଉଡ଼ାଯାତ୍ରାକୁ ନଟାପଡ଼ାରୁ ପ୍ରଥମ(ପହିଲି) ପାଟୁଆ ଆସୁଛି । ଏ ପ୍ରଥାଟି ଶହ ଶହ ବର୍ଷ ଧରି ଆଜି ପର୍ଯ୍ୟନ୍ତ ଚାଲି ଆସୁଛି ।

## ମା'ଙ୍କ ପ୍ରତିଷ୍ଠା -

ମା' ବାରପଡ଼ା ଏ ଅଞ୍ଚଳର ପ୍ରତ୍ୟକ୍ଷ ପ୍ରତିଷ୍ଠିତ ଦେବୀ । ନିଷ୍ଠାର ସହ ପୂଜା କଲେ ଠିକ୍ ଫଳ ମିଳେ । ପ୍ରତିବର୍ଷ ଯାତ୍ରା ସମାପ୍ତି ପରେ ତାଙ୍କର ଉଡ଼ାଖୁଣ୍ଟକୁ ଗୋଟିଏ ପୋଖରୀରେ ପକାଯାଉଥିଲା, ପରବର୍ଷ ଉଡ଼ା ସମୟକୁ ତାଙ୍କ ଦାସୀ ଉପରେ ପ୍ରସନ୍ନ ହୋଇ କହିବାନୁଯାୟୀ ଅନ୍ୟ ଏକ ପୋଖରୀରୁ ଉଡ଼ାଖୁଣ୍ଟ ବାହାରୁଥିଲା । ଏହାର ଅର୍ଥ ତାଙ୍କ ଉଡ଼ାଖୁଣ୍ଟ ସ୍ୱତଃ ଚାଲୁଥିଲା ବା ଜୀବନ୍ତ ଥିଲା । ପୂର୍ବରୁ ଏ ସବୁ ବଡ଼ ବିଚିତ୍ର ଘଟଣାମାନ ଘଟୁଥିଲା । ବିଶ୍ରାମରେ ତାଙ୍କ ଦାସୀ କହିବାନୁଯାୟୀ ନିର୍ଦ୍ଦିଷ୍ଟ ଦିନମାନଙ୍କରେ ବର୍ଷା



Digitized by PPRACHIN, SOA

ହେଉଥିଲା । ଦାସୀ କହିବାନୁଯାୟୀ ମା' ଇନ୍ଦ୍ରସଭାକୁ ଯାଆନ୍ତି । ମା' ବାରପଡ଼ାଙ୍କ ଉପରେ ସମସ୍ତଙ୍କର ଅଖଣ୍ଡ ବିଶ୍ୱାସ ଥିଲା । ଯୁଦ୍ଧକୁ ଯାଉଥିବା ବୀରପୁରୁଷମାନଙ୍କର ମା, ଭଉଣୀ, ସ୍ତ୍ରୀ ଓ ଶୁଭାକାଂକ୍ଷୀମାନେ ମା'ଙ୍କ ପାଖରେ ପୂଜା ଦେଇ ଅଖଣ୍ଡ ଦୀପ ଜାଳି ସମ୍ପର୍କୀୟଙ୍କ ଶୁଭକାମନା କରିବା ସହିତ ବିଜୟ ପାଇଁ ଆତୁର ପ୍ରାର୍ଥନା କରୁଥିଲେ । ଧାରଣା ମଧ୍ୟ ପଡୁଥିଲେ । ମା'ଙ୍କ ମସ୍ତକରୁ ଫୁଲ ଖସୁଥିଲା । ଲୋକଙ୍କର ବିଶ୍ୱାସ ଥିଲା ମା'ଙ୍କର ହସ୍ତ କିମ୍ବା ମସ୍ତକରୁ ଫୁଲ ଖସିଲେ ମନସ୍କାମନା, ଧାରଣା ଆଦି ସଫଳ ବା ପୂରଣ ହୁଏ ଏବଂ ତାହାବି ପୂର୍ଣ୍ଣ ହେଉଥିଲା । ଏବେ ଜନସାଧାରଣଙ୍କ ମନରୁ ଆଧ୍ୟାତ୍ମିକ ଜ୍ଞାନ ଲୋପ ପାଇଯାଉଥିବାରୁ ନୀତି ନିୟମ ଅନୁଯାୟୀ ପୂଜା କରିବାରେ ବ୍ୟତିକ୍ରମ ହେଉଥିବାରୁ ଫଳ ପ୍ରାପ୍ତିରେ କିଛି ବ୍ୟତିକ୍ରମ ଘଟୁଛି । ସେ ସବୁ ସୁଧାରିବା ପାଇଁ ଚେଷ୍ଟା କରାଯିବା ଉଚିତ୍ ।

ଏ ହେଉଛନ୍ତି ସେହି ଗଡ଼ଚଣ୍ଡୀ ଆଦ୍ୟାଶକ୍ତି ମା' ବାରପଡ଼ା । ସେ ପ୍ରତି ନିଶାରାତ୍ରୀରେ ଘୋଡ଼ାଚଢ଼ି ଆଲୁଅ ଜାଳି ବାରପଡ଼ା ଭ୍ରମଣ କରୁଥିବାର ବୁଢ଼ାବୁଢ଼ୀ ବୟସ୍କ ଲୋକମାନେ ଦେଖିଥିବା କଥା ଶୁଣିବାକୁ ମିଳେ । ମା' ଯାଉଥିବା ସମୟରେ ତାଙ୍କ ଚଲା ରାସ୍ତାରୁ ଝୁଣାର ମହକ, ଗନ୍ଧ ହଳଦୀର ବାସନା ଆସେ । ଏପରିକି ଅନ୍ତରର ସହ ଡାକିଲେ ବହୁଲୋକ ତାଙ୍କର ଉପସ୍ଥିତି ଓ ପରୋକ୍ଷ ଯାହାକୁ ଅଙ୍ଗେ ଅନୁଭବ କରିଥିବାର କହନ୍ତି ।

ଗାଁକୁ ବିପଦ ଅପାଦ ପଡ଼ିଲେ, କାହାର ଗୋରୁ ଛେଳି ଆଦି ହଜିଲେ ଘରେ ଜିନିଷପତ୍ର ଆଦି ଠାହୁଡ଼ ହୋଇଥିଲେ,କାହାକୁ ଜ୍ୱର ନୁଆର ହେଲେ,ମାଲିମୋକଦ୍ଦମାର ଆଶୁ ସମାପ୍ତି ଓ ବିଜୟ କାମନାରେ, ପରୀକ୍ଷା ଫଳ ପ୍ରାପ୍ତି ଆଶାରେ ତଥା ଅନ୍ୟାନ୍ୟ ମନସ୍କାମନା ପୂରଣ ପାଇଁ ବାରପଡ଼ାଙ୍କୁ ଭକ୍ତିର ସହ ପୂଜାପଣା ଦେଇ ମାଜଣା କରାଇ ଦାସୀକୁ ପ୍ରସନ୍ନ କରାଇ ତାଙ୍କ ପାଖରୁ ସବୁ ବୁଝାଯାଇଥାଏ । ମା' ମଧ୍ୟ ଦାସୀ ଉପରେ ପ୍ରସନ୍ନ ହୋଇ ସବୁ ଠିକ୍ ଠିକ୍ କଥା କହିଥାନ୍ତି ବୋଲି ଲୋକଙ୍କର ବିଶ୍ୱାସ ଥାଏ ।

ଅନ୍ୟ ପଡ଼ା ବା ଗ୍ରାମମାନଙ୍କରେ ପ୍ରତିଷ୍ଠା ହୋଇଥିବା ଗ୍ରାମଦେବୀମାନଙ୍କୁ, ଯଥା- କ୍ଷୀରକୋଣୀର କ୍ଷେରଣାଇ ବୁଢ଼ୀ, ବାରହାପୁରର



Digitized by PPRACHIN, SOA

ମା' ସିଦ୍ଧେଶ୍ୱରୀଦେବୀ, ରାଇପୁରର ମଙ୍ଗଳା, କମାଣପୁରର କମାଣଶୁଣୀ, ଘୋଡ଼ାସାହିର ଘୋଡ଼ାଶୁଣୀ, ବଢ଼ଖୁରୀ(ଲିଙ୍ଗପଡ଼ା)ର ସାହାଡ଼ାଶୁଣୀ, ଇଟୁଆର ଢାଗୁଳାଇ, ଗୋପିନାଥପୁରର ମଙ୍ଗଳା, କୋଦଣ୍ଡପୁରର ରଣପାଚଣ୍ଡୀ, ଖଣ୍ଡାସାହିର ମାଟିଆମଙ୍ଗଳା, ମେଘମାଧବର ପଣ୍ଣିମା, କାଳି ବସନ୍ତାଇ, ଶିରାପରର ଦାଣ୍ଡଖେଳାଇ ଆଦିଙ୍କୁ ମା' ବାରପଡ଼ାଙ୍କ ସାନଭଉଣୀ କୁହାଯାଇଥାଏ ଓ ମାନ୍ୟତା ମଧ୍ୟ ଦିଆଯାଇଥାଏ ।

ମା'ଙ୍କ ନାମ କରଣର ବିଶେଷତ୍ୱ - ବାରପଡ଼ାର ପାଇକପୁଅମାନେ ତଥା ଜନସାଧାରଣ ମା'ଙ୍କୁ ପୂଜା ଦେଇ ଆସୁଥିବାରୁ ମା'ଙ୍କର ନାମ ଥିଲା ବାରପଡ଼ା ନାୟିକାଣୀ । ବାରପଡ଼ାର ତତ୍କାଳୀନ ସେନାନାୟକ ବା ତଥାକଥିତ ସର୍ଦ୍ଦାରମାନଙ୍କ ଜରିଆରେ ସେ ସମୟରେ ମା' ଆରାଧ୍ୟ ଦେବୀରୂପେ ପୂଜା ହୋଇ ଆସୁଥିବାରୁ ପରବର୍ତ୍ତୀ ସମୟରେ ବାରପଡ଼ା ନାୟିକାଣୀ ରୂପେ ପ୍ରଚାରିତ ହୋଇ ପରିଚିତ ହୋଇ ଆସୁଥିଲେ । ବାରପଡ଼ାରେ ଥିବା ବୀର ସର୍ଦ୍ଦାର ବା ସେନାନାୟକମାନେ ଯୁଦ୍ଧକୁ ସୈନ୍ୟ ଚାଳନ କରିବା ପୂର୍ବରୁ ବିଜୟର କାମନା କରି ମା'ଙ୍କଠାରେ ପୂଜା ଦେଉଥିବାରୁ ମା'ଙ୍କ ନାମ ହୋଇଥିଲା ବାରପଡ଼ା ନାୟକାଣୀ । ଏବେ ସେହି ନାମ ଅପଭ୍ରଂଶ ହୋଇ ଆଜି ଜନ ସାଧାରଣଙ୍କ ମୁଖରେ ବାରପଡ଼ା ନାୟିକାଣୀ ବୋଲି ପ୍ରକାଶିତ ହେଲାଣି । ଠିକ୍ ଯେପରି ଶିରାପୁରର ଦାଣ୍ଡଖେଡ଼ାଇଙ୍କ ନାମକୁ କେତେକ ଲୋକ ଏବେ ଆଣି ଦାଣ୍ଡଖେଳାଇରେ ପହଞ୍ଚାଇଦେବା ସହ ପକ୍କା ମନ୍ଦିର ଉପରେ ଖେଳାଇ ବୋଲି ଲେଖିଦେଲେଣି । ଏଥିରେ ବା ଏ ଯୁଗରେ ହାତରୁ ଖର୍ଚ୍ଚ କରି ପ୍ରତିବାଦ କରିବ କିଏ ? ତାର ଲାଭ ହେବ କଣ ? ସମସ୍ତେ ତ ଏ ବସ୍ତୁବାଦ ଦୁନିଆରେ ପେଟ ଚାଖଣ୍ଡକ ପାଇଁ ନିଜ ନିଜ ରୋଜଗାର ଧନ୍ଦାରେ ବ୍ୟସ୍ତ । ହେଲେ ଏଠାକାର ଭବିଷ୍ୟତ ପିଢ଼ି ଏ ଅଞ୍ଚଳରେ ଦାଣ୍ଡଖେଳାଇ ମନ୍ଦରର ବାସ୍ତବତା, ସତ୍ୟାସତ୍ୟ ଓ ଇତିହାସ ସମ୍ବନ୍ଧରେ ଖୋଜି କିଛି ନପାଇ ବାଟବଣା ହୋଇ ବୁଲୁଥିବେ, ଏକ ଅନ୍ଧ ଓ ଭ୍ରମ ବିଶ୍ୱାସ ନେଇ ସବୁ ଦିନକୁ । ଶିରାପୁର ଦାଣ୍ଡଖେଡ଼ାଇ ବାଲିଗୋହିରୀରେ ଜୁଆ ଖେଳାଉଥିବାର କେହି କେବେ ଦେଖିନାହାନ୍ତି କିମ୍ବା ଏହା ମଧ୍ୟ କିମ୍ବଦନ୍ତୀ ନୁହେଁ । ଏ ସବୁ ମନଗଢ଼ା କାଳ୍ପନିକ



Digitized by PPRACHIN, SOA

କଥା । ଯଦି କେହି ଦେଖିଛନ୍ତି ତେବେ ସେ ସ୍ୱଷ୍ଟ କରି ପ୍ରମାଣ ସହ କୁହନ୍ତୁ । ଏହି ପ୍ରକାର ଅବାସ୍ତବ କଥାମାନ ଆଜିର ଶିଶୁମାନଙ୍କ ଆଗରେ କହି ବାସ୍ତବତାକୁ ଏଡ଼ାଇ ଦେବା ଠିକ୍ ହେଉନାହିଁ । ସମଗ୍ର ସୁର ଅଞ୍ଚଳର ଅବସ୍ଥିତି ତାର ପୁରାତନ ମାନଚିତ୍ର ଆଦିକୁ ବିଚାରକୁ ନେଲେ ପ୍ରକୃତ ବାସ୍ତବ କଥା ହେଉଛି ମଣିଷ ଶରୀରର କେଶତଳକୁ ଶୀରଭଳି ସୁର ରାଜ୍ୟର କେଶପୁର ତଳକୁ ଶିରାପୁରର ଅବସ୍ଥିତି । ସୁର ରାଜ୍ୟର ଶିରକୁ ରକ୍ଷା କରିବା ପାଇଁ ସେଠାକାର ପାଇକ ପୁଅ ଦାଣ୍ଡ ଖେଡ଼ାଇଙ୍କୁ ଧୂପ, ଦୀପ, ନୈବେଦ୍ୟ ସହ ଭକ୍ତିପୂର୍ଣ୍ଣ ପୂଜା ନେଇ ସୁରର ତତ୍‌କାଳୀନ ରାଜରାସ୍ତାରେ ସଦା ସର୍ବଦା ଖାଡ଼ା ପ୍ରହରା ଦେଉଥିବାରୁ ନାମଥିଲା 'ଦାଣ୍ଡଖେଡ଼ାଇ', ଅର୍ଥ ରାଜଦଣ୍ଡର ରକ୍ଷା ନିମିତ୍ତ ମା' ନିଜେ ଖାଡ଼ା ପ୍ରହରା ଦେବା ପାଇଁ ଉଭା ହେଉଥିବାରୁ  ନାମ 'ଦାଣ୍ଡଖେଡ଼ାଇ', ଦାଣ୍ଡଖେଳାଇ ନୁହେଁ । ଏବେବି ଲୋକମାନଙ୍କ ମୁଖରୁ ଦାଣ୍ଡଖେଡ଼ାଇ ସ୍ୱତଃ ବାହାରି ଆସେ । ଏ ନିରାଟ ସତ୍ୟତା ଓ ବାସ୍ତବତାକୁ ମାନିନେବାର ଅଛି । ଶତ୍ରୁମାନଙ୍କୁ ଶିରାପୁର ଗୋହିରୀ ଭିତରେ ବାଟବଣା କରାଇ ମାରିବା ପାଇଁ ବହୁଗଳି କନ୍ଥି ସୃଷ୍ଟି କରାଯାଇଥିଲା । ଯେଉଁ ଗଳିରେ ଶତ୍ରୁ ପଶିଯାଏ ଘୁରି ଘୁରି ଆସି ସେହି ଗଳିରେ ବାହାରି ଥାଏ । ବାହାରି ଯାଇ ଉଦ୍ଧାର ପାଇବାକୁ ବାଟ ପାଇନଥାଏ । ଏହାହିଁ ଥିଲା  ସୁରବାସୀ ପାଇକ ପୁଅମାନଙ୍କର ପୁରୁଣା ପ୍ରଥାର ସାମରିକ ବ୍ୟୁହର ରୂପରେଖ । ଦାଣ୍ଡଖେଳାଇକୁ ଛାଡ଼ିଦେଲେ 'ଏ ମାଟିର କାହାଣୀ' ପୂର୍ଣ୍ଣାଙ୍ଗ ହୁଏନି । ଯେହେତୁ କେଶପୁର, ସାଜନପୁର, ଶଙ୍ଖପୋଲ ସେପାଖରେ ରହିଯାଇଛି । ଏ ମାଟିର କଥା କହିବା ଆଉକିଛି 'ମା ଦାଣ୍ଡଖେଳାଇ'ରେ ।

**ହଜିଲା ଅତୀତ :**

ସେ ଦିନର ହଜିଗଲା  ଅତୀତକୁ ଏବେ ଖୋଜିହେଲେ ମିଳେ ନାହିଁ । ସେ ଦିନର ଏ ମାଟିର ବୀର ଖଣ୍ଡାୟତ ଓ ପାଇକପୁର ଏଅଞ୍ଚଳର ବାରପଡ଼ା ନାୟିକାଣୀ ଓ ଦାଣ୍ଡଖେଡ଼ାଇଙ୍କୁ ଯଥାବିଧି ପୂଜା ଦେଇ ତାର ଖଣ୍ଡାର ଧାରକୁ ପଜାଉଥିଲା, ଶତ୍ରୁର ଶିରଚ୍ଛେଦନ ନିମିତ୍ତ । ତାର ଢାଲ ତରୱାଲକୁ ମାଜି ଚକ୍ ଚକ୍ କରୁଥିଲା ସୂର୍ଯ୍ୟ କିରଣରେ ଝଲସାର ଶତ୍ରୁ ହୃଦୟରେ କମ୍ପିବ ଓ ଭୟ



Digitized by PPRACHIN, SOA

ସଞ୍ଚାର କରାଇବା ଲାଗି । ଶତ୍ରୁକୁ ଦେଖିଲେ ତା କୋଷବିଦ୍ଧ ଅସୀକୁ କୋଷମୁକ୍ତ କରୁଥିଲା । ଉତ୍ତୋଳିତ ହସ୍ତରେ ଶତ୍ରୁ ସହିତ ଲଢ଼ିବା ପାଇଁ । ହେଲେ ସେହି ସୋର ମାଟିର ସେ ପୁଅ ଆଜି ତାର ପୂର୍ବର ଗର୍ବ, ଦର୍ପ, ଗୌରବ, ଗାରିମା, ସୌରଭ, ମହିମା, ସମ୍ମାନ, ସ୍ୱାଭିମାନ ସବୁକିଛିକୁ ହରାଇ ଏବେ ଜୀବନ ଞ୍ଜାଇବା ଲାଗି ଏ ମାଟିକୁ ଚାଷ କରି, ଚାଷୀରେ ରୂପାନ୍ତରିତ ହୋଇଯାଇଛି । କେବଳ ଚାଷୀର ପରିଚୟ ନେଇ ବଞ୍ଚି ରହିଛି । କେତେକ ଜୀବିକା ନିର୍ବାହ ଲାଗି ନିଜ ଜାତିଗି କୌଳିକ ବୃତ୍ତିକୁ ଛାଡ଼ି ବିଭିନ୍ନ ପ୍ରକାର ବୃତ୍ତିକୁ ଆଦରିନେଇ ଏ ମାଟି ଛାଡ଼ି ବାହାରକୁ ଚାଲିଗଲେଣି ପୁରୁଷ ପୁରୁଷ ଧରି । ଏବେ ସେମାନଙ୍କର ଉତ୍ତରଦାୟାଦମାନେ କାହୁଁ ଜାଣିବେ ଅତୀତର ଏ ମାଟିର ତଥା ଏଠାକାର ଦେବଦେବୀଙ୍କର ସେ ଜାଜ୍ୱଲ୍ୟମୟ, ଗୌରବମୟ କାହାଣୀ ବିଷୟରେ ? କାଳର କରାଳ ଚକ୍ରରେ, ସମୟର ପ୍ରଖର ସ୍ରୋତରେ, ହଜିଯାଇଛି ଆଜି ଏ ମାଟିର ପ୍ରତି ଗାଁରେ ଥିବା ଅତୀତର ଆଖଡ଼ା ଘର, କୁସ୍ତିଶାଳା, ମଲ୍ଲଶିକ୍ଷା କେନ୍ଦ୍ର ଓ ଲାକ୍ଷବିନ୍ଧା, ବାଟୁଳି ଚାଳନା ପଦା ଆଦି । କେବଳ ମୂକ ସାକ୍ଷୀ ରୂପେ ଛିଡ଼ା ହୋଇ ଆଜି ପର୍ଯ୍ୟନ୍ତ ଯଥାବିଧି ବିଧାନରେ ପୂଜା ପାଇ ଆସୁଛି ସେହି 'ମା ବାରପଡ଼ା ନାୟିକାଣୀ' ମନ୍ଦିର ଭିତରେ,ଜନମାନସର ଆରାଧ ଦେବୀ ମା' ।

**ମନ୍ଦିର :**

୧୮୦୩ ମସିହାରେ ଇଂରେଜମାନଙ୍କ ସହିତ ଯୁଦ୍ଧରେ ସୁରର ଛତ୍ରପୁରସ୍ଥ ରାଜବାଟୀ ଧ୍ୱଂସ ହେବା ସହିତ ବାରପଡ଼ା ମନ୍ଦିର ମଧ୍ୟ ଧ୍ୱଂସ ହୋଇଯାଇଥିଲା । ସେହିଦିନଠାରୁ ବାରପଡ଼ା ଏକ ପାଚୁଳୀ ଗଛ ମୂଳେ ପୂଜା ହୋଇ ଆସୁଥିଲେ । ପରବର୍ତ୍ତୀ ସମୟରେ ସ୍ଥାନୀୟ ଲୋକମାନଙ୍କ ସହଯୋଗରେ ଏକ ଚାଳ ଛପର ଘର ହୋଇ ପୂଜାପାଇ ଆସୁଥିଲେ । ଯୁଦ୍ଧ ପରେ ଯୁଦ୍ଧ ବିଧ୍ୱସ୍ତ ପାଇକ ତଥା ଜନସାଧାରଣଙ୍କ ଆର୍ଥିକ ଅବସ୍ଥା ସ୍ୱଚ୍ଛଳ ନଥିବାରୁ କିମ୍ବା ସେ ପ୍ରକାର ବଦାନ୍ୟ ବ୍ୟକ୍ତି ମିଳୁ ନଥିବାରୁ ବାରପଡ଼ାଙ୍କ ମନ୍ଦିର କଥା କେହି ଚିନ୍ତା କରିପାରିନଥିଲେ । ୧୯୫୩/୫୪ ମସିହା ସମୟକୁ



Digitized by PPRACHIN, SOA

ସ୍ଥାନୀୟ ଅଡ଼ଙ୍ଗ ବଜାରସ୍ଥ ସେ ସମୟର ବଡ଼ ବ୍ୟବସାହୀ ୰ ହଜାରିଲାଲ ଖଣ୍ଡେଲଓ୍ୱାଲଙ୍କର ବଦାନ୍ୟତାରୁ ସେ ଏବର ବାରପଡ଼ା ମନ୍ଦିରଟିକୁ ତିଆରି କରାଇ ଦେଇଥିଲେ । ପରେ ମୋବାରକପୁରସ୍ଥ ୰ ପ୍ରାଣବନ୍ଧୁ ଭାରତୀ ବସନ୍ତାଇ ପୀଠରେ ମନ୍ଦିର ତିଆରି କରିଥିଲେ । ଏବେ ମନ୍ଦିର ବଶଢ଼ ଭିତରେ ଥିବା ଶିବ ମନ୍ଦିର ଜିତେନ୍ଦ୍ର ମହାପାତ୍ର ମୂଳେଶ୍ୱରଙ୍କ ଦ୍ୱାରା ନିର୍ମାଣ କରାଯାଇଛି । ପାଚେରୀଟି ବିଶିଷ୍ଟ ଓକିଲ ବିଷ୍ଣୁ ମହାପାତ୍ରଙ୍କ ଦ୍ୱାରା ନିର୍ମାଣ କରାଯାଇଥିଲା । ମୁଖ୍ୟ ମନ୍ଦିରଭିତରେ ବାରପଡ଼ା ତାଙ୍କର ସନ୍ତାନମାନଙ୍କୁ ନେଇ ଅଛନ୍ତି । ଯଥା : ବାରପଡ଼ା, ବିରବର ବଳୀୟାର ସିଂ, ସିଦ୍ଧବାରଖଣ୍ଡା....... ମନ୍ଦିର ପାଖରେ ଅଛନ୍ତି ପଣ୍ଡିମା, ମଣ୍ଡୁଳିଶୁଣୀ (ପାହାଡ଼ର ମୁଣ୍ଡ ଉପରେ ଥିବାରୁ ମୁଣ୍ଡୁଳିଶୁଣୀ), କାଳିବସନ୍ତାଇ ଇତ୍ୟାଦି ।

**ଯାନିଯାତ୍ରା :**

ରାଜଶାସନର ପତନ ପରେ ଅର୍ଥାତ୍ ୧୮୦୩ ମସିହାଠାରୁ ଗତାନୁଗତିକ ପ୍ରଥାନୁଯାୟୀ ମୂଳେଶ୍ୱର (ପାଇକସାହି) ଗ୍ରାମବାସୀମାନେ ଉପର ଲିଖିତ ବାରପଡ଼ାର ଜନସାଧାରଣଙ୍କଠାରୁ ମାଗଣ କରି ମକର ସଂକ୍ରାନ୍ତି, ମହାବିଷୁବ ସଂକ୍ରାନ୍ତି, ରଜ ସଂକ୍ରାନ୍ତି ଓ ମୂଳେଶ୍ୱର ଶିବଙ୍କ ପାଖରେ ଜାଗର ଯାତ୍ରା ଆଦି ପର୍ବମାନ ଆଡ଼ମ୍ବର ସହ ପାଳନ କରିଆସୁଛନ୍ତି ଏବଂ ୨୦୦୩ ମସିହାଠାରୁ ଜନ୍ମାଷ୍ଟମୀ ଓ ଦୁର୍ଗାପୂଜା ପାଳନ କରାହୋଇ ଆସୁଛି । ଦୈନନ୍ଦିନ ପୂଜାର ଯାବତୀୟ ଖର୍ଚ୍ଚ ମଧ୍ୟ ଗ୍ରାମବାସୀଙ୍କ ଦ୍ୱାରା ହୋଇଆସୁଛି । ଠାକୁରାଣୀଙ୍କର ଉକ୍ତ ପୂଜା ଓ ପର୍ବ ପାଳନ ତଥା ସୁପରିଚାଳନ ନିମିତ୍ତ ଶ୍ରୀ ଅନନ୍ତ ପ୍ରସାଦ ପାତ୍ରଙ୍କ ସଭାପତିତ୍ୱରେ,ଶ୍ରୀ ଗୋପିନାଥ ମହାପାତ୍ରଙ୍କ ସମ୍ପାଦକତ୍ୱରେ ଏକ ପରିଚାଳନା କମିଟି ଗଠନ କରାଯାଇ ସମସ୍ତ କଥା ବୁଝା ବୁଝି କରି ଆସୁଛନ୍ତି ।

**ଉଡ଼ାଯାତ୍ରା :**

ମା' ବାରପଡ଼ାଙ୍କର ସମସ୍ତ ପର୍ବପର୍ବାଣି ମଧ୍ୟରେରଜସଂକାନ୍ତିରେ ଉଡ଼ାଯାତ୍ରା ପର୍ବ ସର୍ବ ମୁଖ୍ୟ ଓ ଉଭାଯାତ୍ରା ଅଟେ । ଆପଦ ବିପଦ ସମୟରେ



Digitized by PPRACHIN, SOA

ପରିବାରର ପିତାମାତାମାନେ ସେମାନଙ୍କ ପିଲାମାନଙ୍କୁ ମା'ଙ୍କ ଉଦ୍ଦାପର୍ବକୁ ପାଟୁଆ ହେବାଲାଗି ମାନସିକ କରି ସଂକଟମୋଚନ ପାଇଁ କ୍ଷମା ପ୍ରାର୍ଥନା କରିଥାନ୍ତି । ରଜସଂକ୍ରାନ୍ତି ଉଦ୍ଦାପର୍ବକୁ ମାନସିକ ଅନୁଯାୟୀ ପାଟୁଆ ହେବାପାଇଁ ଭକ୍ତମାନଙ୍କୁ ପାଞ୍ଚଦିନ ଧରି ଅରୁଆଖାଇ, ହବିଷାନ୍ନ କରି ନୂଆଲୁଗା ପିନ୍ଧି ନିଆରାରେ ରହିବାକୁ ପଡ଼ିଥାଏ । ପ୍ରତିବର୍ଷ ଏକଶହ ପାଖାପାଖି କିମ୍ବା ଏକଶହରୁ ଊର୍ଦ୍ଧ୍ୱ ପାଟୁଆ ହୋଇଥାନ୍ତି । ରଜସଂକାନ୍ତି ବଳେକୁ ଦୀର୍ଘ ପାଞ୍ଚଦିନ ଧରି ମା'ଙ୍କର ପାଟୁଆ ଯାତ୍ରା ପାଳନ କରାଯାଇଥାଏ । ରଜ ସଂକ୍ରାନ୍ତିର କିଛିଦିନ ପୂର୍ବରୁ ମା'ଙ୍କଠାରେ ଚଣ୍ଡୀପାଠ କରାଯାଇ, ମାଜଣା କରାଯାଇ ଘଟ ଓ ଉଦ୍ଦାଖୁଣ୍ଟ ବାହାର କରାଯାଇଥାଏ । ଏହି ଘଟ ଗାଉଣୀ, ବାଜା ସହିତ ବାରପଡ଼ା(ଗ୍ରାମ) ପରିକ୍ରମା କରି ଗାଁ ମାଗଣ କରାଯାଇଥାଏ । ସଂକ୍ରାନ୍ତି ଆଗଦିନ ନଟାପଡ଼ାକୁ ଘଟ ଯାଏ । ପହିଲି ପାଟୁଆଙ୍କ ଘରପାଖରେ ମାଜଣ ହୁଏ । ମା' ସେଠାରେ ପ୍ରସନ୍ନ ହୋଇଥାନ୍ତି । ମା'ଙ୍କୁ ବନ୍ଦାପନା କଲାପରେ ତାଙ୍କ ନିର୍ଦ୍ଦେଶକ୍ରମେ ପହିଲି ପାଟୁଆ ବରଣ କରାଯାଇଥାଏ । ସେଠାରେ ସେ ଗାଁ ମାଗଣ କରିସାରି ମନ୍ଦିରକୁ ଫେରି ଆସନ୍ତି । ପ୍ରଥମ ରଜଦିନ ଭୋର୍‌ଠାରୁ ମା'ଙ୍କର ଏକ ସ୍ୱତନ୍ତ୍ର ଘଟକୁ ଜଣେ ଭକ୍ତ ମୁଣ୍ଡାଇ ଢୋଲ ମହୁରୀ ସହ ଗ୍ରାମ ପରିକ୍ରମା ସମାପ୍ତି ପରେ ଲିଙ୍ଗପଡ଼ାସ୍ଥ ତାଙ୍କ ସଇ ଘରକୁ ଯାଇଥାନ୍ତି । ରାତ୍ରୀବେଳକୁ ଝୁଣାପାଟ ଯାତ୍ରା କରାଯାଏ । ଉକ୍ତ ଝୁଣାପାଟ ଉଦ୍ଦେଶ୍ୟରେ ମା'ଙ୍କ ମନ୍ଦିର ବେଢ଼ା ଭିତର ପ୍ରାୟ ୨ ଫୁଟ ଗଭୀର, ୪ ଫୁଟ ଓସାର ଓ ୪ ଫୁଟ ଲମ୍ବର ଏକ ଗାତ ଭିତରେ ନିଆଁ ଜଳାଇ ଝୁଣା ପକାଯାଇଥାଏ । ଏହି ଝୁଣା ଧୂଆଁ ଉପରେ ପାଟୁଆଙ୍କୁ ତଳମୁହାଁ କରି ଜଣକ ପରେ ଜଣଙ୍କୁ ଝୁଲା ଯାଇଥାଏ । ଦ୍ୱିତୀୟ ରଜଦିନ ନିଶାଘଟ ପରିକ୍ରମା କରେ । ଏହି ଦିନ ସମସ୍ତେ ଶୋଇଗଲାପରେ କେହି ନଦେଖିଲା ଭଳି ନିଶାରାତ୍ରରେ ମୋବରକପୁରସ୍ଥ ଦ୍ୱାରୀକା ପୋଖରୀଠାରେ ପୂଜା କରାଇ ନୈବେଦ୍ୟ ଦେଇ ସେଠାରେ ମାଜଣା କରାଯାଇଥାଏ । ମାଜଣା ଉତ୍ତାରୁ ଘଟଉତ୍ତୋଳନ କରାଯାଇ ବାରପଡ଼ା ଦେବୀଙ୍କର ଥିବା ଅନ୍ୟାନ୍ୟ ଭଉଣୀ ଚଢ଼କମରା ରାସ୍ତାରେ ମା' ଦ୍ୱାରୀକାବୁଢ଼ୀ, ଶିରାପୁରରେ ମା' ଦାଣ୍ଡଖେଡ଼ାଇ,



Digitized by PPRACHIN, SOA

ଗୋପିନାଥପୁରରେ ମା' ମଙ୍ଗଳା, ବାଞ୍ଛିକଠାରେ ବଳଦେବଜୀଉ, ବାଟରେ ବାଟଗଣେଶ ଆଦିଙ୍କୁ ପୂଜାନୈବେଦ୍ୟ ଓ ପାଣି ଦେଇ କେତେକ ନିର୍ଦ୍ଦିଷ୍ଟ ଘରକୁ ବୁଲିବାକୁ ଯାଇ ଘଟ ମନ୍ଦିରକୁ ଫେରି ପାତାଳି କରାଯାଏ । ସୋର ନଗରର ଦକ୍ଷିଣ ଦ୍ୱାର ଓ ମୃତ୍ୟୁପରେ ସ୍ୱର୍ଗକୁ ଯିବାପାଇଁ ଦ୍ୱାର ଅର୍ଥାତ୍ ଶ୍ମଶାନ ନିକଟରେ ମା' ଦେବୀ ଥିବାରୁ ତାଙ୍କୁ ଦ୍ୱାରୀକାବୁଢ଼ି ଓ ତତ୍ ନିକଟସ୍ଥ ପୋଖରୀକୁ ଦ୍ୱାରୀକା ପୋଖରୀ କୁହାହୋଇ ଆସୁଛି । ଦ୍ୱାରୀକା ପୋଖରୀ ଆଡ଼ି ଓ ତହିଁରେ ଥିବା ଗଛମାଳ ପରବର୍ତ୍ତୀ କାଳରେ ଲୋପ ପାଇ ଆଜି ଜନବସତିରେ ପରିଣତ ହୋଇଗଲାଣି । ମା' ବାରପଦ୍ମାଙ୍କର ଘଟ ଆସୁଥିବା ସେଦିନର ନିଛାଟିଆ ଅନ୍ଧାରୁଆ କିଆବଣ ଘେରା ଗୋହିରୀ ରାସ୍ତାର ଚିହ୍ନବର୍ଣ୍ଣ ଆଉ ନାହିଁ । ଦ୍ୱାରକା ଦେବୀଙ୍କର କିଆବଣ ଭିତରୁ ବାଘର ହେଣ୍ଟାଳ ଓ ଶିଆଳର ହୋକେ ହୋ ଆଜି ଶୁଣା ଯାଉନାହିଁ କି ନେଉଳ, ଡମ୍ପ, ରଣା, ଚିତି ଏବଂ କଟାସର ଦୌଡ଼ ଆଉ ଦେଖିବାକୁ ମିଳୁନାହିଁ । ମିଳୁନାହିଁ ବାଲିଗୋହିରୀରେ ଦେଖିବାକୁ ଶଶା, ଠେକୁଆଙ୍କ ପାଦଚିହ୍ନ, କୁମ୍ଭାଟୁଆର ଡାକ, ସଲିରୀର ଚେଁ ଚେଁଇଆର ରାବ । ସେ ସବୁ କାଳକ୍ରମେ ସଫାହୋଇ ସଡ଼କରେ ରୂପାନ୍ତରିତ ହେବା ସହ ଚାରିଆଡ଼େ ବିଜୁଳିବତୀ ଲାଗି ଚକ୍‌ମକ୍ ହୋଇଗଲାଣି । ପୂର୍ବର ଶ୍ମଶାନରେ ଆଜି ସତ୍ୟାନନ୍ଦ ହାଇସ୍କୁଲର ପକ୍କାଗୃହ ଛିଡ଼ା ହୋଇଛି । ରାତିବେଳକୁ ସେଠାରେ ଆଉ ପୂର୍ବର ଭୂତପ୍ରେତଙ୍କ ନାଚ ଦେଖିବାକୁ ମିଳୁନାହିଁ କି ଭୟ ନାହିଁ । ଅଢ଼େଇଶହ ବର୍ଷ ପୂର୍ବରୁ ସୁର ପାଇକପୁଅର ଶେଷ ସନ୍ତକ ରୂପେ ରହିଆସିଥିବା ଲାକ୍ଷବିନ୍ଧା ପଡ଼ିଆର ନାମବି ଆଉ ପରବର୍ତ୍ତୀ ପିଢ଼ିର ଭବିଷ୍ୟତ ସନ୍ତାନ ମାନେ ଶୁଣିବାକୁ ବା ଜାଣିବାକୁ ପାଇବେ ନାହିଁ । ଏହି ପଡ଼ିଆଟି ହେଉଛି ସତ୍ୟାନନ୍ଦ ହାଇସ୍କୁଲ ସାମ୍ନାରେ ଥିବା ପଡ଼ିଆ । ଦିନଥିଲା ସୋର ପାଇକପୁଅ ତାର ସାମରିକ କଳାକୌଶଳ ଶିକ୍ଷାକରିବା ଓ ପରୀକ୍ଷାଦେବା ଆଦି ଏହିଠାରେ କରୁଥିଲା । ଏବେ ସେ ପଡ଼ିଆ ଜନବସତି ହେବାରେ ଲାଗିଛି । ଫଳରେ ଦିନକୁ ଦିନ ଲାକ୍ଷବିନ୍ଧା ପଡ଼ିଆର ରୂପ ବଦଳି ଚାଲିଛି । ସୁରର ଅତୀତ ଇତିହାସ ଦିନକୁ ଦିନ ଲୁଚି ଯାଉଛି । ସମୟର ସ୍ରୋତରେ ସେ ସବୁ ଯାହା ହେବାକୁ ଥିବ ତାହା ହେବ ।



Digitized by PPRACHIN, SOA

ଏବେ ତୃତୀୟ ଦିନରେ ମା' ବାରପଡ଼ାଙ୍କ ନିକଟରେ ହୁଏ ନିଆଁ ପାଟ । ସେହିଦିନ ସଂଧ୍ୟାଠାରୁ ମନ୍ଦିର ନିକଟରେ ଗାହାଣ ବଢାଣ କରାଯାଏ । ଗାଉଣୀ ଚଣ୍ଡୀପୁରାଣ, ମା'ଙ୍କ ଜନ୍ମବୃତାନ୍ତ ଓ ବନ୍ଦନା ଆଦି ଗାଇଥାଏ । ରାତି ୧୦ଟାରୁ ୧୧ଟା ମଧ୍ୟରେ ପାଟୁଆମାନେ ଢ଼ୋଲମହୁରୀ ଆଦି ବାଦ୍ୟ ସହ କ ଗୋଭାଯାତ୍ରାରେ ପଟି ପାଖକୁ ଯାଉଥାନ୍ତି । ସେଠାରେ ପଟିକୁ ଯଥା ପୂଜାର୍ଚ୍ଚନା ଓ ପାଣି ଦେଇ, ବାଟରେ ମଧ୍ୟ ସମସ୍ତ ଦେବଦେବୀଙ୍କ ଉଦ୍ଦେଶ୍ୟରେ ପାଣି ଦେଇ ରାତ୍ର ୩ ଘଟିକା ସୁଦ୍ଧା ମା'ଙ୍କ ମନ୍ଦର ପାଖରେ ପହଞ୍ଚି ଥାଆନ୍ତି । ପାଟୁଆମାନେ ପହଞ୍ଚିବା ପରେ ମାଇଣା ଆରମ୍ଭ ହୁଏ । ମା' ନିଜେ ଦାସୀ ଉପରେ ବିଶ୍ରାମ ହୋଇ ଆଦେଶ ଦେଲାପରେ ପାଟୁଆମାନେ ଶୃଙ୍ଖଳିତ ଭାବରେ ଗାଧୋଇ ଥାଆନ୍ତି । ପୂର୍ବରୁ ସେଠାରେ ପ୍ରସ୍ତୁତ ହୋଇ ରହିଥିବା ରଢ଼ ନିଆଁ ଉପରେ ଝୁଣା ପକାଗଲା ପରେ ମା' ପହିଲି ପାଟୁଆକୁ ଧରି ଆଗେ ନିଆଁ ଉପରେ ଚାଲିବା ପରେ ଅନ୍ୟ ଦାସୀ ଓ ସମସ୍ତ ପାଟୁଆମାନେ ଭେଲେ ଭେଲେ ସ୍ୱର ଉଚ୍ଚାରଣ କରି ସେହି ନିଆଁ ଉପରେ ଚାଲିଥାନ୍ତି । ନିଆଁ ପାଟ ଶେଷ ହେବା ବେଳକୁ ସକାଳ ହୋଇ ଯାଇଥାଏ । ନିଆଁପାଟ ଦେଖିବାକୁ ଆସିଥିବା ଦର୍ଶକମାନେ ଘରକୁ ବାହୁଡ଼ି ଯାଇଥାନ୍ତି ।

ଏହାପରେ ଆସିଯାଏ ଚତୁର୍ଥ ଦିନର କାର୍ଯ୍ୟକ୍ରମ । ଏହିଦିନ ଉଡ଼ାପର୍ବ ପାଇଁ ସମସ୍ତ ପ୍ରସ୍ତୁତି ଚାଲିଥାଏ । ପାଟୁଆମାନେ ବିଶ୍ରାମ ନେଇଥାନ୍ତି । ଉଡ଼ାଖୁଣ୍ଟ ପୋତାଯିବା ପାଇଁ ଦୁଇଟି ସୁଗଭୀର ଗାତ ଖୋଳାଯାଏ ଓ ସୂର୍ଯ୍ୟାସ୍ତ ପୂର୍ବରୁ ମାଇଣା ଆରମ୍ଭ ହୋଇ ମା' ପ୍ରସନ୍ନ ହୋଇ ଆଦେଶ ଦେଲେ ଖୁଣ୍ଟ ପଡ଼ିଥାଏ । ଖୁଣ୍ଟକୁ ଯଥାବିଧି ପୂଜା ଦେଇ ମା'ଙ୍କଠାରେଗାହଣ ବଢାଣ ଓ କୀର୍ତ୍ତନ ଭଜନ ଆଦି କରାଯାଏ ।

ଗାଁ ଓ ଆଖପାଖ ଗାଁରୁ ଆସିଥିବା ଯୁବକମାନେ ଓ ତାଙ୍କ ସହିତ ଯୁବ ପାଟୁଆମାନେ ମଧ୍ୟ ଯୋଗଦେଇ ବାଜା ଓ ନାଗରା ବଜାଇ ବାଗୁଡ଼ି ଖେଳିଥାନ୍ତି । ବୟସ୍କ ଲୋକମାନେ ତାସ, ପସାପାଳି ଓ ପିଲାମାନେ ଲୁଡୁ, ଚେସ୍, କେରମ୍ ଆଦି ଧରି ଦଳ ଦଳ ଠାଆ ଠାଆ ବସି ପୂରା ଯାତ୍ରା ଅଞ୍ଚଳଟିକୁ ଦୀର୍ଘ ପାଞ୍ଚଦିନ ଧରି ଗହଳ ଚହଳ ରଖିବା ସହିତ ଚଳଚଞ୍ଚଳ ଓ



Digitized by PPRACHIN, SOA

ଉତ୍ସବମୁଖର କରିରଖିଥାନ୍ତି । ମା'ଙ୍କ ଯାତ୍ରା ଦାୟିତ୍ୱରେ ଥିବା କର୍ତ୍ତବ୍ୟନିଷ୍ଠ ଦାୟିତ୍ୱବାନ କର୍ମକର୍ତ୍ତାମାନେ ମଧ୍ୟ ଚଳଚଞ୍ଚଳ ରହି ୫ମ ଦିନର ଉଡ଼ାଯାତ୍ରା କାର୍ଯ୍ୟକ୍ରମ ପାଇଁ ବିଭିନ୍ନ ପ୍ରକାର ପ୍ରସ୍ତୁତି ଆରମ୍ଭ କରିଦେଇଥାନ୍ତି । ରାତି ୧୨ଟା ବେଳକୁ ପାଟୁଆମାନେ ପୂର୍ବଦିନ ଭଳି ଶୋଭାଯାତ୍ରାରେ ପଟି ପାଖକୁ ଯାଇ ପ୍ରଚଳିତ ବିଧିବିଧାନ ମୁତାବକ ଫୁଲ, ଚନ୍ଦନ,ସିନ୍ଦୂର ଆଦି ଦେଇ ପୂଜା ମାଜଣା ଆଦି କରାଇ ଦାସୀକୁ ପ୍ରସନ୍ନ କରାଇଥାନ୍ତି । ଇତିମଧ୍ୟରେ ପାଟୁଆ ଓ କର୍ମକର୍ତ୍ତାମାନେ ନିତ୍ୟକର୍ମ ଶେଷ କରିସକାଳ ହେବାବେଳକୁ ପଟିଠାରେ ପୁନଃରାୟ ସମବେତ ହୋଇ ମୁଣ୍ଡରେ ଏକ ସ୍ୱତନ୍ତ୍ର ଆକର୍ଷଣୀୟ ଢଙ୍ଗରେ ପଗଡ଼ି ବାନ୍ଧିଥାନ୍ତି । ସେମାନଙ୍କ ମା', ବୁଢ଼ୀମା'ମାନେ ସନ୍ତାନମାନଙ୍କର ଶୁଭ କାମନା କରି ପ୍ରଥାନୁଯାୟୀ ମୁଣ୍ଡରେ ସୁସଜ୍ଜିତ ପାଣି କଳସ ମୁଣ୍ଡାଇ ପାଟୁଆ ଧାଡ଼ି ପଛରେ ଧାଡ଼ିରେ ଚାଲିଥାନ୍ତି । ପାଟୁଆମାନେ ହାତରେ ଛଇଁତା ସରା ବା ମଶାଲ ଧରି କାନ୍ଧରେ ବେତ ପକାଇ ଏକ ମନଛୁଆଁ ଶୈଳୀରେ ଝୁଲି ଝୁଲି ପାଦକୁ ପାଦକୁ ମିଳାଇ ନାଚି ନାଚି ନିର୍ଦ୍ଦିଷ୍ଟ ପଥରେ ସୋର ନଗର ଓ ଗ୍ରାମ ପରିକ୍ରମା କରିଥାନ୍ତି । ପାଟୁଆ ଶୋଭାଯାତ୍ରାରେ ଏକ ସୁସଜ୍ଜିତ ବିମାନରେ ଜଣେ ଖଣ୍ଡା ପାଟୁଆବୀରବେଶରେ ନାକସିଧା ଏକ ଖଣ୍ଡା ହାତରେ ଧରି ନିଶ୍ଚଳ ଭାବରେ ଆଗକୁ ଅନାଇ ଠିଆ ହୋଇ ରହିଥାନ୍ତି । ଶୋଭାଯାତ୍ରା ସାଙ୍ଗରେ ଦାଣ୍ଡା, ମାଇକ୍, ଅସୁର, ଭାଲୁ, ବାଘ, ଘୋଡ଼ା, ହାତୀ, ଶବର ଶବରୁଣୀ, ନାଚବାଲି, ପାଇକ ଆଖଡ଼ା ଆଦି ଥିବାରୁ ପ୍ରତ୍ୟେକ ଲୋକର ମନ ପସନ୍ଦ ହେଲାଭଳି ମନଲୋଭା ହୋଇଥାଏ । ସେ ସମୟରେ ବିଭିନ୍ନ ପ୍ରକାରର ବାଦ୍ୟନାଦ୍ୟରେ ଗଗନ ପବନ ନିନାଦିତ ହୋଇ ଚଉଦିଗ ପ୍ରକମ୍ପିତ ହେବା ସହିତ ପ୍ରତିଧ୍ୱନିତ ମଧ୍ୟ ହୋଇଥାଏ । ଜନସାଧାରଣ ରାସ୍ତାରେ ଉଭୟ ପାର୍ଶ୍ୱରେ ରହି ଉକ୍ତ ଦୃଶ୍ୟକୁ ମନଭରି ଉପଭୋଗ କରିଥାନ୍ତି । ଶୋଭାଯାତ୍ରାରେ ଗଲାବେଳେ ବାଟରେ ବିଭିନ୍ନ ସ୍ଥାନରେ ପାଟୁଆମାନଙ୍କୁ ପିଇବାକୁ ପଣା ଦିଆଯାଇଥାଏ । ପାଟୁଆ ଶୋଭାଯାତ୍ରା ବାରପଡ଼ା ମନ୍ଦିର ପାଖରେ ପହଞ୍ଚିଲା ବେଳକୁ ଦିନ ୩ ଘଟିକା ହୋଇଯାଏ । ତା ପରେ ପାଟୁଆମାନେ ବାରପଡ଼ା ମନ୍ଦିରକୁ ୭ ଥର ପରିକ୍ରମା ସହିତ ପାର୍ଶ୍ୱଦେବାଦେବୀ



Digitized by PPRACHIN, SOA

ଓ ଉଡ଼ାଖୁଣ୍ଟାକୁ ମଧ୍ୟ ପରିକ୍ରମା କରିଥାନ୍ତି । ପରିକ୍ରମା ପରେ କିଛି ସମୟ ପାଟୁଆ ମାନଙ୍କୁ ବିଶ୍ରାମ ଦିଆଯାଏ । ମନ୍ଦିର ପାଖରେ ପାଟୁଆ ଶୋଭାଯାତ୍ରା ପହଞ୍ଚିବା ପରେ ଢୋଲ କୀର୍ତ୍ତନ ଘଣ୍ଟା ଘଡ଼ି ଶଙ୍ଖ ଆଦି ବଜାଇ ହୁଳହୁଳି ହରିବୋଲ ଧ୍ୱନିରେ ମା' ବାରପଦ୍ମାଙ୍କୁ ଆହ୍ୱାନ କରାଯାଇଥାଏ । ମା' ବାରପଦ୍ମା ତାଙ୍କ ଦାସୀ ଉପରେ ପ୍ରସନ୍ନ ହୋଇ ଉଡ଼ା କରାଇବା ପାଇଁ ନିର୍ଦ୍ଦେଶ ଦେଇଥାନ୍ତି । ପାର୍ଶ୍ୱଦେବୀମାନେ ମଧ୍ୟ ପ୍ରସନ୍ନ ହୋଇଥାନ୍ତି । ଉଡ଼ାଯାତ୍ରା ଦେଖିବା ପାଇଁ ଆଖପାଖ ଗାଁରୁ ବହୁଲୋକ ଝିଅବୋହୁ, ଭୁଆଶୁଣୀ, ପିଲାଛୁଆଙ୍କ ସହିତ ଆସିଥାନ୍ତି । ଯାତ୍ରାର ଶୋଭାକୁ ଆନନ୍ଦ ଉଲ୍ଲାସର ସହ ସମସ୍ତେ ଉପଭୋଗ କରିବାରେ ଲାଗି ଯାଇଥାନ୍ତି । ଉଡ଼ା ଦିନ ଠାକୁରାଣୀମାନଙ୍କୁ ନୂତନ ବସ୍ତ୍ର ଓ ଭୂଷଣରେ ବିଭୂଷିତ କରାଇ ଫୁଲ ଚନ୍ଦନ ସିନ୍ଦୂର ଆଦିରେ ଭକ୍ତମାନେ ଅତି ସୁନ୍ଦର ଭାବେ ସଜାଇଥାନ୍ତି ।

ଉଡ଼ାଖୁଣ୍ଟ ଉପରକୁ ଏକ ଘୁରୁଣୀ ଲାଗିଥାଏ । ଘୁରୁଣୀ ଉପରେ ପାଟୁଆଙ୍କୁ ଉଡ଼ାଇବା ଲାଗି ଏକ ଲମ୍ବ ବାହଲକୁ ଶକ୍ତ ଭାବରେ ବନ୍ଧା ଯାଇଥାଏ । ବାହଲର ଏକ ପାଖରେ ଲମ୍ବ ଦଉଡ଼ି ଓହଳିଥାଏ ଧରି ଘୁରାଇବା ପାଇଁ ଓ ଅପର ପାର୍ଶ୍ୱରେ ପାଟୁଆଙ୍କ ଉଡ଼ିବା ପାଇଁ ଏକ ଝୁଲା ଭଳି ଦଉଡ଼ି ବନ୍ଧା ଯାଇଥାଏ । ଉଡ଼ାଖୁଣ୍ଟର ଏକ ପାର୍ଶ୍ୱରେ ବାହଲ ମୁଣ୍ଡ ସିଧାକୁ ଏକ ଉଚ୍ଚ ଭାଡ଼ି ଯାଇଥାଏ । ସେହି ଭାଡ଼ିର ଗୋଟିଏ ପାଖରେ ପାଟୁଆ ଚଢ଼ିବା ପାଇଁ ସିଡ଼ି ବନ୍ଧା ଯାଇଥାଏ । ଅପର ପାର୍ଶ୍ୱରେ ଅନ୍ୟ ଏକ ସିଡ଼ି ଓହ୍ଲାଇବା ପାଇଁ ବନ୍ଧାହୋଇଥାଏ ।

ଗଛ ଉପରକୁ ଲତା ଗୋଡ଼େଇ ଗୋଡ଼େଇ ଉଠିଲା ଭଳି ଉଡ଼ା ଦିନକୁ ଉଡ଼ା ଖୁଣ୍ଟରେ ତଳୁ ଉପର ପର୍ଯ୍ୟନ୍ତ ଫୁଲମାଳରେ ଗୁଡ଼ାଇ ସଜା ଯାଇଥାଏ । ନିର୍ମୂଳି ବା ଗୁଣ୍ଡୁଚିଲତା ଗଛ ଉପରେ ଓହଳିଲା ଭଳି ବାହାଲର ଫୁଲମାଳ ଓହଳାଇ ଅତିସୁନ୍ଦର ଓ ଆକର୍ଷଣୀୟ ଭାବରେ ସଜାଯାଇଥାଏ ।

ଠାକୁରାଣୀଙ୍କ ଦାସୀମାନେ ମୁଣ୍ଡ ଓ ଗଳାରେ ସିନ୍ଦୂର ଲଗାଇ ହାତରେ ବେତବାଡ଼ି ବା ବେତର କୁଣ୍ଡଳୀ ଧରି, ଗଳାରେ ମନ୍ଦାର ଫୁଲର ମାଳ ପିନ୍ଧି ଏକ ଆକର୍ଷଣୀୟ ରୂପରେ ଝୁଙ୍କିହେବା ସହିତ ଉଦଣ୍ଡ ନୃତ୍ୟ କରି ,ବିକଟାଳ



Digitized by PPRACHIN, SOA

କୁହାଟ ମାରିଥାନ୍ତି । ସେମାନଙ୍କ ଏ ପ୍ରକାର କୁହାଟରେ ପିଲାମାନେ ଡରି ବିଚଳିତ ହେବା ସହିତ ସ୍ତମ୍ଭିଭୂତ ହୋଇଯାନ୍ତି । ଯୁବକଯୁବତୀମାନେ ମଜା ଉଠାଇ ଉପଭୋଗ କରୁଥାନ୍ତି । ଲୋକମାନେ ମଜା ଦେଖିବାକୁ ଘେରିଗଲାବେଳକୁ ଦାସୀମାନେ ବେତ ବାଡ଼ି ହଲାଇ ନାଚି ସେମାନଙ୍କୁ ଦୂରେଇ ଦେଇଥାନ୍ତି । ପ୍ରଥମେ ପହିଲି ପାଟୁଆ ଉଡ଼ିସାରିଲା ପରେ ଅନ୍ୟ ପାଟୁଆମାନେ ଭାଡ଼ି ଉପରେ ଚଢ଼ି ଭେଲେ ଭେଲେ କହି ଉଡ଼ିବା ସାଙ୍ଗକୁ ଅଣ୍ଟିରେ ନେଇଥିବା ଖୁରୁମା, ମାନସିଙ୍ଗାକୁ ଫିଙ୍ଗୁଥାନ୍ତି । ସେ ମାନସିଙ୍ଗା ବା ଖୁରୁମାକୁ ଗୋଟେଇ ଖାଇବା ଲାଗି ସମବେତ ଦର୍ଶକମାନଙ୍କ ମଧ୍ୟରେ ଏକ ପ୍ରତିଦ୍ୱନ୍ଦିତା ହୋଇଥାଏ । ଉପରୁ ପଡୁ ପଡୁ ମାଟି ସ୍ପର୍ଶ କରିବା ପୂର୍ବରୁ ଯିଏ ଖୁରୁମା ବା ମାନସିଙ୍ଗା ଖଣ୍ଡକୁ ଧରି ନେଇପାରିଲା, ସେ ନିଜକୁ ଅତି ଭାଗ୍ୟବାନ ବୋଲି ବିବେଚନା କରିଥାନ୍ତି । ଖୁରୁମାକୁ ସାଉଣ୍ଟି ଖାଇବା କିମ୍ବା ଡିଆଁ ମାରି ମାଟିରେ ପଡ଼ିବା ପୂର୍ବରୁ ଧରି ଖାଇବାରେ ଦର୍ଶକମାନଙ୍କ ମଧ୍ୟରେ ପ୍ରତିଦ୍ୱନ୍ଦିତା ଲାଗିଥିବା ସମୟରେ ଏକପ୍ରକାର ଆନନ୍ଦ ଖେଳିଯାଇଥାଏ ।

ସ୍ଥାନୀୟ ବ୍ୟବସାୟୀମାନେ ଜନସମାବେଶର ସୁଯୋଗ ନେଇ ବ୍ୟବସାୟରୁ ଦୁଇପଇସା ରୋଜଗାର ପାଇଁ ପାନଦୋକାନୀ, ଚା ଦୋକାନୀଠାରୁ ଆରମ୍ଭ କରି ମିଠା, ତେଲଭାଜି, ଖେଳନା, ମନୋହରୀ, ଘର ଉପକରଣ ବିକ୍ରି କରୁଥିବା ଦୋକାନୀମାନେ ମଧ୍ୟ ଉଡ଼ାଯାତ୍ରାସ୍ଥଳକୁ ଆସିଥାନ୍ତି । ଏହା ସହିତ ବେଲୁନ୍‌ବାଲାର ଡାକ,ପେଂକାଳୀବାଲାର ପେଂକାଳୀ ଶବ୍ଦ ଓ ଆଇସକ୍ରୀମ୍‌ବାଲାର ଡମ୍ବରୁର ଡମ୍ ଡମ୍ ଶବ୍ଦ ମେଳା ଅଞ୍ଚଳଟିକୁ ମୁଖରିତ କରି ରଖିଥାଏ ।। ଉଡ଼ାଯାତ୍ରାଟି ଏହି ପ୍ରକାରେ ପ୍ରତିବର୍ଷ ଅତି ଜାକଜମକରେ ଆଡ଼ମ୍ବରପୂର୍ଣ୍ଣ ଭାବରେ ସମସ୍ତଙ୍କ ସହଯୋଗରେ ପାଳନ କରାଯାଇଥାଏ । ଯାତ୍ରାସ୍ଥଳରେ ଯେପରି କୌଣସି ପ୍ରକାର ଅପ୍ରିତୀକର ପରିସ୍ଥିତି ସୃଷ୍ଟି ନହୁଏ ସେଥିପାଇଁ ସ୍ୱେଚ୍ଛାସେବୀମାନେ ସତର୍କ ଥାନ୍ତି ।

ଠାକୁରାଣୀଙ୍କ ଜମିଜମା - ବିଜେସ୍ଥଳୀ ସହ ଏବେ ବାରପଡ଼ାଙ୍କ ନାମରେ କିଛି ଜମି ଅଛି । ପୂର୍ବରୁ ରାଜା ଓ ଜମିଦାରମାନେ ଠାକୁରାଣୀଙ୍କ ସେବାପୂଜା ଚଳାଇବା ପାଇଁ କିଛି ଜମି ଦେଇଥିଲେ । ହେଲେ ସ୍ୱାଧୀନତାର



Digitized by PPRACHIN, SOA

ପରବର୍ତ୍ତୀକାଳରେ ସେ ସବୁକୁ କେତେକ ଲୋଭୀ ଜମି ହଡ଼ପକାରୀ ବ୍ୟକ୍ତିମାନେ ବିଭିନ୍ନ ଉପାୟରେ ହଡ଼ପ କରି ନେଇଛନ୍ତି ବୋଲି ଶୁଣାଯାଏ । ଏଣୁ ବଡ଼ ଆର୍ଥିକ ଦୁରାବସ୍ଥା ଭିତରେ ମା'ଙ୍କର ପୂଜାସେବା ଚାଲିଛି । କେତେକ ଉତ୍ସାହୀ ଲୋକ ଯଦି ବାହାରି ସ୍ୱାଧୀନତା ପୂର୍ବର ରେକର୍ଡ଼କୁ ବାହାର କରି ତଦନ୍ତ କରାଇ ପାରନ୍ତେ, ତେବେ ବର୍ତ୍ତମାନର ଦେବୋତ୍ତର ଆଇନ୍ ଅନୁଯାୟୀ ହଡ଼ପ୍ ହୋଇଥିବା ଶ୍ରୀଜଗନ୍ନାଥଙ୍କ ସମ୍ପତ୍ତି ଉଦ୍ଧାର କରାଗଲା ପରି; ହଡ଼ପ ହୋଇଥିବା ବାରପଡ଼ା ଠାକୁରାଣୀଙ୍କ ଜମିରୁ କିଛି ଅଂଶ ଉଦ୍ଧାର କରାଯାଇ ପାରନ୍ତା ଏବଂ ମା'ଙ୍କର ଆର୍ଥିକ ସ୍ଥିତିରେ ଉନ୍ନତି ଘଟି ଉନ୍ନତମାନର ସେବାପୂଜା କରାଯାଇପାରନ୍ତା ।

## ପରିଚାଳନା କମିଟି :

ଏବେ ପୂଜା ଦାୟିତ୍ୱରେ ଥିବା କେତେକ ଉତ୍ସାହୀ ଲୋକ ବାରପଡ଼ାଙ୍କ ସେବାପୂଜା କରାଇବା ଲାଗି ଏକ ଟ୍ରଷ୍ଟ ଗଠନ କରାଇ କିଛି ସ୍ଥାୟୀ ଜମା ରଖିବା ଉଦ୍ଦେଶ୍ୟରେ ଏକ ମହତ ଉଦ୍ୟମ ଜାରୀ ରଖିଛନ୍ତି । ସମସ୍ତଙ୍କର ନିଃସ୍ୱାର୍ଥପର ଆନ୍ତରିକ ସହଯୋଗ ଦ୍ୱାରା, ଯଦି ସେତକ କାର୍ଯ୍ୟକାରୀ ହୋଇପାରେ ତେବେ ବାରପଡ଼ା ଠାକୁରାଣୀଙ୍କ ସେବାପୂଜାରେ ବହୁ ପରିବର୍ତ୍ତନ ଆସିପାରନ୍ତା ଭବିଷ୍ୟତକୁ ।

ବର୍ତ୍ତମାନ ପାଇଁ ପ୍ରତିବର୍ଷ ରଥଯାତ୍ରାର ପରିସମାପ୍ତି ପରେ ଅର୍ଥାତ୍ ଆଷାଢ଼ ମାସ ଆରମ୍ଭ ଠାରୁ କ୍ରମାନ୍ୱୟରେ ମାସ ଶେଷ ପର୍ଯ୍ୟନ୍ତ ଗ୍ରାମର ବାରଜଣ ବଦାନ୍ୟ ବ୍ୟକ୍ତି ମା' ବାରପଡ଼ାଙ୍କର ଦୈନନ୍ଦିନ ପୂଜାର ସମସ୍ତ ଖର୍ଚ୍ଚ ସହ ପୂଜକର ମାସିକ ଦରମା ବାବଦକୁ ବ୍ୟୟ ବହନ କରିବାକୁ ସ୍ୱତଃ ଭାଗ କରିନେଇଛନ୍ତି । ଏଥିରେ କାହାରି ବାଧ୍ୟବାଧକତା କିମ୍ବା ଚାପ ନଥାଏ ।

### ସୋର ବାରପଡ଼ା

ସୋର ନୁହେଁ ଏହି ମାଟି ଅତୀତର ସେହି ସୁର
ଜନନୀ ଜନ୍ମଭୂମି ସୁରବାସୀଙ୍କର
ସୁରବୀର ପ୍ରସବିନୀ ଭରାଶସ୍ୟ ଉତ୍ପାଦିନୀ
ସଭିଙ୍କ ମୁଖରେ ଦିଅଇ ସେ ଆହାର ।।୧।।



Digitized by PPRACHIN, SOA

ଭାସୁଥିଲା କ୍ଷୀର ଦହି ନାମ ଥିଲା କ୍ଷୀରକୋଣୀ
ଦହିପୁର ଆଉ ଯେ ଦହିସଢ଼ା
ଖୁରୀ ପୁରା ତରକାରୀ ତୁଣ୍ଡକୁ ପୁରା ଆହାର
ଯୋଗାଇ (ନାମ) ବଡ଼ଖୁରୀ ତୁଣ୍ଡପଡ଼ା ।।୨।।
ମଂସର ଭଣ୍ଡାର ଘର ଥିଲା ଦିନେ ଲ ରାଜ୍ୟର
ମେଣ୍ଢାଗଡ଼ିଆ ଆଉତ ବାର୍‌ହାପୁର
ଖାଦ୍ୟ ଅଭାବ ନଥିଲା ରାଜ୍ୟବାସୀଙ୍କ ମୁଣ୍ଡରେ
ସକଳ ସମ୍ପଦେ ଥିଲା ଭରପୁର ।୩।
ପାଟୁଆ ନାଟୁଆ ଭରା ଥାଇତ ନଟାପଡ଼ା
ରାଧାଭରା ରହି ରାଧାବଲ୍ଲଭପୁର
ରଙ୍ଗଦେଇ ସଜାଇବାରେ ନିପୁଣ ଥିଲେ କାରିଗର
ରଙ୍ଗପତି ଗ୍ରାମରେ ଭରପୁର ।୪।
ଆନନ୍ଦେ ରହୁଥିଲେ ଚିନ୍ତା ନଥିଲା ଶିରେ
ଖଡ଼୍‌ଗେ ସାର ଦେଇ ଅସୀଧାର ଘସି
ସୁରବୀର ପରା ବସି ରାଜ୍ୟ ସୀମନ୍ତେ ରଖି ଆଖି
ଜାଗ୍ରତ ରହୁଥିଲେ ସଦା ସୁରବାସୀ ।୫।
ମାଆ ବାରପଡ଼ା ପୁଚ୍ଛି ପାଇକ ପୁଅ ତାର
ବାରପଡ଼ାରେ ଥିଲେ ବାସିନ୍ଦା ହୋଇ
ରାଜ୍ୟସାରା ବୀରପଣେ ବିଚରଣ କରୁଥିଲେ
ନିରିଭୟରେ ରଣହୁଙ୍କାର ଦେଇ ।୬।
ମୂଳପାଇକସାଇରେ ପାଇକପୁଅ
ଭୟାସାହିରେ ସେନାପତି ରହୁଥିଲେ
ଘୋଡ଼ାସାହିରେ ଘୋଡ଼ା ସବାର ବାହିନୀ
ଖଣ୍ଡାସାହିରେ ଖଡ଼ଗବାହିନୀ ଥିଲେ । ୭ ।
କୁଦଣ୍ଡପୁରରେ ଧନୁତୀର ବାହିନୀ
କମାଣପୁରରେ ଯେ କମାଣବାହିନୀ



Digitized by PPRACHIN, SOA

ଏ ରୂପେ ବିହ୍ବରଚି ରହି ଆସୁଥିଲେ

ସୁର ରାଇଛେ ତାହା ସୁରବୀର ବାହିନୀ ।୮।

ସଦା କମର ଭିଡ଼ି ଉତ୍ତର ଦ୍ୱାର

ଜଗୁଥିବାରୁ ନାମ ଯେ କମରପୁର

ପାଇକପୁଅ ସମର ସଜାକୁ ନେଇ

ସୋର ନଗରେ ନାମ ଅଛି ଭରପୁର । ୯ ।

ସେନାପତି ସିଂଘାନାଦ କର୍ଣ୍ଣେ ପଡ଼ନ୍ତେ

ସିହରଣ ଖେଳୁଥିଲା ପାଇକମନେ

ବିଜୟ ନିମନ୍ତେ ବାରପଡ଼ାକୁ ବନ୍ଦୀ

ବାହାରି ପଡୁଥିଲା ଭୟଙ୍କର ରଣେ । ୧୦ ।

ଜୟ ଜୟକାରେ କମ୍ପୁଥିଲା ମେଦିନୀ

କମ୍ପୁଥିଲା ଏ ଅଞ୍ଚଳ ଗଗନ ପବନ

ଛନକା ପଶୁଥିଲା ଶତ୍ରୁର ଛାତିରେ

ରଣଭୂମି ଛାଡ଼ିବାକୁ ପରୁଥିଲା ମନ ।୧୧।

ମା'ଙ୍କ ବିଜୟ ଟିକା କପାଳେ ପିନ୍ଧି

ମଜି ଯାଉଥିଲେ ପ୍ରାଣକୁ ମୂର୍ଚ୍ଛି

ଯୁଦ୍ଧେ ଜୟ ମୃତ୍ୟୁ ଦୁଇଟି ବ୍ୟତିରେକେ

ଦେଖିପାରୁ ନଥିଲା ଦେତ ଆନକିଛି ।

ସାହା ହୋଇ ମା' ଘୋର ସମର ପ୍ରାଙ୍ଗଣେ

ନିପାତ କରାଇ ଅରି କୂଳବଳ

ଲେଉଟାଇ ଆଣୁଥିଲେ ପାଇକ ବଳ-

ଆମ ପିନ୍ଧାଇ ଗଳାରେ ବିଜୟମାଳ ।୧୩।

କାଆଁଶ ବାଆଁଶ କୂଳେ- ବାଉଁଶ ଜଙ୍ଗଲେ

ମୂଳସିଙ୍ଗ ପୀତାକାଳିଆ ଧାର ଜଳେ

ବାଗୁଡ଼ି ମଙ୍ଗଳପୁର ହୁଡ଼ି ସୋର ନଗରେ

ଲାଗିଥିଲା ସମର ଘୋର ଯୁଦ୍ଧ ନିଆଁ ଜଳେ ।୧୪।



Digitized by PPRACHIN, SOA

ମାରିଥିଲ ସୁରବୀର ପାଇକପୁର
ରଣେ ଅଣପଚାଶ ସଇନ
ସମରେ ନାଶ ଯିବାରୁ ସୁର ନରେଶ
ମରହଟ୍ଟା ଫିରିଙ୍ଗି ସନ୍ଧି ହୁଅନ୍ତେଣ ।।୧୫।
ସରିଯାଇଥିଲା ବୀରପଣ ସୁରର
ଅସ୍ତ ହୋଇଯାଇଥିଲା ସ୍ୱାଧୀନ ରବି ଏ ମାଟିର
ସେହିଦିନୁ ସୁରନାମ ପରିବରତେ
ପ୍ରବର୍ତ୍ତିଥିଲା ସୋରନାମ ଫିରିଙ୍ଗି ପାଟିରେ ।।୧୬।
କପୂର ସିନା ଉଡ଼ିଗଲା କନାତ ପଡ଼ିଛି
ଆକୁସିନା ନେଇଗଲେ ଗାତତ ରହିଛି
ସୁରର ଅତୀତ ଗୌରବ ସିନା ହଜିଛି
ତାର ଅସ୍ତି ଥାଟ ଏବେ ବି ପଡ଼ିଛି ।।୧୭।
ସିଏ ବିକସୁ ଥିବ ଇତିହାସ ଗାଉଥିବ
ସାକ୍ଷୀଥିବେ ଚନ୍ଦ୍ର ସୂର୍ଯ୍ୟ ଦେବାଦେବୀ ଏମାଟି
ଯେ ପର୍ଯ୍ୟନ୍ତ ଧରାପୃଷ୍ଠରେ ପୃଥିବୀ ଥିବ
ଦୈବୀ ଦୁର୍ଯ୍ୟୋଗ ପଡ଼ି ନଥିବ ଓଲଟି ।।୧୮।
କିଛି କହେ ବାରପଡ଼ା କିଛି କହିବ
ତା ଭଉଣୀ ଶିରାପୁର ଦାଣ୍ଡଖେଡ଼ାଇ
ପହରା ଦେଉଥିଲା (ରାଜ) ଦାଣ୍ଡେ ଅବା ରହି
ସେଠା ପାଇକପୁଅ ପାଖୁ ପୂଜା ପାଇ ।।୧୯।
ଆଉ କିଛି କହିବ ଲଣ୍ଡନେ ବେନିସିଂହ
ଉଣେଇଣି ଶହ ବୟାନବେ ଆଦ୍ୟ ସମାଜ
ଦୁଇହଜାର ଚାରି 'କାଳାନ୍ତର', 'ସମାଜ'
ଥାଏ ସୋରର 'ସୁରଭି ଇନ୍' ଲାଜ ।।୨୦।
କିଛି କହିବେ ଇଣ୍ଡିରୋଟ ଫାଉଣ୍ଡେସନ୍ ଦିଲ୍ଲୀ
ମୁଖ୍ୟ ଗବେଷକ ଚନ୍ଦ୍ରଶେଖର ତିୱାରୀ



Digitized by PPRACHIN, SOA

ଅତୀତକୁ ଖୋଜନ୍ତି ଯିଏ ଦିନରାତି
ସୋର ମାଟିରେ ଗାଁକୁ ଗାଁ ଘୁରି ଘୁରି ।୨୧।
କହିବ କିଛି ବିବିଧ ରତ୍ନ ସଂଗ୍ରହ
ଆଉ ସୁବାଷ ପାଣିଙ୍କ ଲେଖନୀର
ଗ୍ଲିମ୍ପସେସ୍ ଅଫ୍ ହିଷ୍ଟୋରୀ ଏଣ୍ଡ
କଲ୍‌ଚର୍ ଅଫ୍ ବାଲେଶ୍ୱର ।୨୨।
ସୋରର ଇତିହାସ ନୁହେଁ କାଳ୍ପନିକ
ନୁହେଁ କିମ୍ବଦନ୍ତୀ ଅବା ଲୋକ କଥା
ନୁହେଁ କାହାଣୀ ଅବା ମନଗଢ଼ା କଥା
ଲୁଚି ଅଛି ଯହିଁରେ କିଛି ସତ୍ୟତା ।୨୩।
ତଥ୍ୟ ଧରି ମନଦେଇ ଖୋଜିଲେ
ବାହାରି ପାରିବ ତ ସବୁ ସତକଥା
ସନ୍ଦେହ ଅବା ଅନୁସୂଚନା ସହିତ
କାହାର ମନରେ ନରହିବ ବ୍ୟଥା ।୨୪।

***



Digitized by PPRACHIN, SOA

## ଏ ମାଟିର କଥା କହଇ
## କିଛି ମା' ଦାଣ୍ଡ ଖେଡ଼ାଇ
### ସୋର ଓ ମା' ଦାଣ୍ଡଖେଡ଼ାଇଙ୍କ ଇତିବୃତି
*(ତା ୧-୫-୨୦୦୮ କାଳାଚରରେ ପ୍ରକାଶିତ)*

ମା' ! ମା' ଦାଣ୍ଡାଖେଡ଼ାଇ ! ରଣାଙ୍ଗନ କ୍ଷେତ୍ରରେ ରାଜ୍ୟ, ରାଜ୍ୟପଦ ଏପରିକି ସମସ୍ତପ୍ରକାର ଅସ୍ତ୍ର ଶସ୍ତ୍ର ହରାଇ ଜଣେ ଆହତ ସର୍ବହରା ସୈନିକ ଭଳି ଜୀବନ ରାଜଦାଣ୍ଡରେ ତଥା ତୋ ନିତିଚଲା ରାଜପଥରେ ଅତି ଦୀନ ହୀନ ଭାବରେ ଘୁରିବୁଲୁଥିବା ସମୟରେ ତୋ ମାଟିର ଜଣେ ସନ୍ତାନ (ମନ୍ମଥ ଦୀକ୍ଷିତ) ଅତି ଆତ୍ମୀୟତାର ସହ କହିଲେ 'ମା'ଙ୍କର ଯଜ୍ଞ ଆଗକୁ ଆସୁଛି। ଏକ ବିଶେଷାଙ୍କ ବାହାର କରାଯିବାର ବ୍ୟବସ୍ଥା ହେଉଛି । ଭାଇ! ଆପଣଙ୍କ ଏବର ଖଡ଼୍‌ଗରୂପୀ ଲେକନୀ ଥରେ ଚାଳନ କରନ୍ତୁ । ମା'ଙ୍କ ପାଇଁ ।'

ଏତିକି ଶୁଣିଲାପରେ ଏ ଲେଖକଙ୍କର ଶରୀରରେ ଖେଳିଗଲା ଶିହରଣ । ସିଂହାବଲୋକନେ ଫେରି ଚାହିଁଲି ଶତାବ୍ଦୀ, ଶତାବ୍ଦୀ ତଳର ଅତୀତର ସେହି ସୋରବାସୀଙ୍କର ମୃତ ଗୌରବ, ହୃତ ସୌରଭ, ପରାହୃତ ଗାରିମା ତଥା ମା' ଦାଣ୍ଡଖେଡ଼ାଇଙ୍କ ପ୍ରତି ସୁରବୀର ପାଇକ ବାହିନୀର ଥିବା ଅଖଣ୍ଡ ବିଶ୍ୱାସ, ଭକ୍ତି ଓ ମା'ଙ୍କ ପ୍ରତିଷ୍ଠା ପ୍ରତି । ରୁପେଲି ପରଦା ଉପରେ ଚଳଚ୍ଚିତ୍ର ଛବି ଭଳି ଗୋଟିଏ ପରେ ଗୋଟିଏ କରି କେତେ କଣ ଖେଳିଗଲା ଏ ମାନସ ପଟ୍ଟଳରେ ।

ବିଗତ ଶତାବ୍ଦୀ ଶତାବ୍ଦୀ ଧରି ବହିଗଲା ଦିନ ଗୁଡ଼ିକରେ ଏହି ସୋରମାଟିର ଜନ ଜୀବନରେ କେତେକ ଯେ ପୁରୁଷ ବିତି ଗଲାଣି, ତେକେ ଜୀବନ ହଜିଗଲାଣି, କେତେ ମାଟିର ପଙ୍କଜ ବସିଗଲାଣି, ସଂସ୍କୃତି ଯାଇ ଅପସଂସ୍କୃତି ଆସିଗଲାଣି । ତାହାର କଳନା କେହି କରିନାହିଁ। ଏ ଅଭାବି ଓ ବେକାରୀ ଦୁନିଆରେ ନିଜ, ନିଜ ପରିବାରର ଭରଣ ପୋଷଣ ଲାଗି ଦୈନନ୍ଦିନ ତେଲଲୁଣର ସଂସାରରେ ବ୍ୟସ୍ତ ରହି ନିଜ ଜନ୍ମାଟିର ଅତୀତର ଗୌରବ ଗାରିମା ପ୍ରତି ଦୃଷ୍ଟି ରଖିବାକୁ କେହି ସ୍ୱମୟବି ପାଇନାହାନ୍ତି ।



Digitized by PPRACHIN, SOA

ଏହାର ସୁଯୋଗ ନେଇ କେତେକ ସ୍ୱଳ୍ପଜ୍ଞାନୀ ବା ଅଜ୍ଞାନୀ ବ୍ୟକ୍ତି ସୋରର ଅତୀତର ଗୌରବ, ଶୌରଭ, ଗାରିମା ଉପରେ ଅପଭ୍ରଂଶ କରିଚାଲିଛନ୍ତି । ଚପଳମତି ଶିଶୁମାନେ ସେ ସବୁକୁ ପଢ଼ି ଭୁଲ ଧାରଣାର ବଶବର୍ତ୍ତୀ ହୋଇଯାଉଛନ୍ତି । ଏହା ଅତି ଦୁଃଖ ଓ ପରିତାପର ବିଷୟ । ଯେପରି 'ପିତା' ଡାକ ଅପଭ୍ରଂଶ ହୋଇ 'ବାପା' ଗଡ଼ଜାତ ଅଞ୍ଚଳରେ 'ବୁଆ' ଏବେ ଆସି 'ବା'ରେ ପହଞ୍ଚିଲାଣି । ଏହିପରି କାହିଁରେ କେତେ ଯେ ଅପଭ୍ରଂଶ ହୋଇ ଚାଲିଛି ତାର ଠିକଣା ନାହିଁ । ସେହିପରି ଆମ ଗୌରବ. ଗାରିମା ଉପରେ ମଧ୍ୟ ଅପଭ୍ରଂଶ ହୋଇ ଚାଲିଛି ପ୍ରତିଦିନ ସମସ୍ତଙ୍କ ଜାଣତରେ ଓ ଅଜାଣତରେ । ଏହା ବିରୋଧରେ କେହି ସ୍ୱର ଉଠାଉନାହାନ୍ତି କିମ୍ବା ପ୍ରତିବାଦ କରୁନାହାନ୍ତି । ସତେ ଯେପରି ସବୁ କିଛି ଦେହସୁହା ହୋଇଗଲାଣି । ଏପରି ହେଲେ ଏ ଓଡ଼ିଆ ଜାତି ଆମର ଯେ ତାହାର ସଂହତି ହରାଇ ବସିବ ।

'ମା ଦାଣ୍ଡ ଖେଡ଼ାଇ'ର ଐତିହ୍ୟ, ସୋରର ଅତୀତ ଇତିହାସ ସହିତ ସଂପୃକ୍ତ ଏବଂ ଓତଃପ୍ରୋତ ଭାବେ ଜଡ଼ିତ । ଏ କ୍ଷେତ୍ରରେ ସୋରର ଅତୀତ ଇତିହାସକୁ ଛାଡ଼ିଦେଲେ 'ମା ଦାଣ୍ଡଖେଡ଼ାଇ'ର ପରିଚୟ ନାହିଁ । ଦାଣ୍ଡଖେଡ଼ାଇକୁ ଛାଡ଼ିଦେଲେ ସୋରର ଇତିହାସ ପୂର୍ଣ୍ଣ ନୁହଁ । ଠିକ୍ ଯେପରି ଶ୍ରୀରାମ ଓ ରାବଣଙ୍କ ମଧ୍ୟରୁ କୌଣସି ଜଣଙ୍କୁ ଛାଡ଼ିଦେଲେ ରାମାୟଣର ସୃଷ୍ଟି ନାହିଁ । କୌଣସି ଜିନିଷ ଅପ୍ରାପ୍ତ ହେଲେ ବା ଆଶା ଅପୂର୍ଣ୍ଣାଙ୍ଗ ରହିଲେ ମା'ଠାରେ ସନ୍ତାନ ସନ୍ତତିମାନେ ଅଭିମାନ କରନ୍ତି । ଅଭିମାନ କରିବାବି ସ୍ୱଭାବିକ୍ । ଏଣୁ ମା' ଦାଣ୍ଡଖେଡ଼ାଇଙ୍କଠାରେ ଏ ଲେଖକଙ୍କର ବହୁ ଅଭିମାନ ରହିଯାଇଛି । ରାଜ୍ୟର ସେନାପତି ଭାବରେ ଏ ଲେଖକଙ୍କର ପୂର୍ବସୁରୀ କେତେଥର ତାଙ୍କୁ ପୂଜା ଦେଇ ବା କରୁଣାରୁ ବରପ୍ରାପ୍ତ ହୋଇ ନିଖୁଣ ଅସୀଚାଳନର ଶକ୍ତି ଓ ସାମର୍ଥ୍ୟ ଲାଭ କରି ଶତାଧିକ ଅରୀଙ୍କ ଶିର ଏହି ମାଟିରେ ଗଡ଼ାଇବାକୁ ସାମର୍ଥ୍ୟ ହୋଇଥିଲେ ଯୁଦ୍ଧ କ୍ଷେତ୍ରରେ, କିନ୍ତୁ ସେହି ବଂଶର ଦାୟାଦ ଆଜି ତାକୁ ଡାକି ନିର୍ବାଚନ ରଣାଙ୍ଗନରେ ହାରି ସର୍ବହରା ହୋଇଗଲା । ହେଲେ ତା'ପ୍ରତି ଟିକିଏ ଦୟା କଲାନାହିଁ । କିମ୍ବା ତା'ଠାରୁ ପୂଜା ଗ୍ରହଣ କଲାନାହିଁ । ପଥର ଦେଉଳ ଭିତରେ ପଥର ପାଲଟିଗଲା ।



Digitized by PPRACHIN, SOA

ଏହିପରି କେତେ ଲୋକଙ୍କର ଆତୁର ଡାକ ଶୁଣିନଥିବ ସେ । ଏଥିରେ ତାର ପୂର୍ବ ଗୌରବ ରହିଲା ତ ? ଏ ସରଳ ହୃଦୟରେ ଖୋଜି ଖୋଜି ସେ କିଛି ପାଏ ନାହିଁ । ବାପ ଖାଇଥିଲେ ତାଳ ପୁଅକୁ ହୁଏ କାଳ ନୀତିରେ ଯୁଦ୍ଧକ୍ଷେତ୍ରରେ ନରହତ୍ୟା ଯଦି ଏକମାତ୍ର ଭୁଲ ବା ପାପ ହୋଇଥାଏ, ତାହା କେବଳ ରାଜଧର୍ମକୁ ଅନୁସରଣ କରି ପୂର୍ବସୁରୀମାନେ କରିଯାଇଛନ୍ତି ଏ ରାଜ୍ୟ ଓ ରାଜ୍ୟବାସୀଙ୍କର ସମ୍ମାନ ରଖିବା ପାଇଁ । ଯୁଦ୍ଧଯାତ୍ରା ପୂର୍ବରୁ ତୋତେ ଦେଇଥିବା ପୂଜାର ଟେକ ରଖିବା ପାଇଁ । ଏଥିରେ ପୂର୍ବସୁରୀମାନଙ୍କର ଦୋଷ କିମ୍ବା ଭୁଲ ନାହିଁ । କର୍ତ୍ତବ୍ୟ ଦୃଷ୍ଟିକୋଣରୁ ତାହାହିଁ କରାଯାଇଛି । ଗୀତାରେ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ ସେଇଆହିଁ କହିଛନ୍ତି । ସେ ସବୁ ଯାହାହେଉ, ଏବେ ଏ ନିକଞ୍ଚନକୁ ଶକ୍ତି ଦିଅ । ସୋର ଓ ତୋର ହୃତ, ବିଲୁପ୍ତ ଇତିହାସକୁ ନିର୍ଭିକ ଓ ନିର୍ଭୁଲ ଭାବରେ ଲେଖି ଲୋକ ଲୋଚନକୁ ଆଣିବା ପାଇଁ ।

ସବୁ କିଛି କାଲି ପରି ମନେ ପଡ଼ିଯାଉଛି । ଗୀତା, ଭାଗବତ, ମହାଯୋଗୀ ଶ୍ରୀ ଅରବିନ୍ଦ ଓ ଜଗଦ୍‌ଗୁରୁ ଶ୍ରୀ ଶ୍ରୀ ନିଗମାନନ୍ଦଙ୍କ ଉକ୍ତି ଅନୁଯାୟୀ ପ୍ରତ୍ୟେକ ନାରୀ,ମା, ଆଦି ଦେବୀଙ୍କ ଅଂଶସ୍ୱରୂପ ସେହି ଅନୁଯାୟୀ ତୋ (ଦେବୀ ଦାଣ୍ଡ ଖେଡ଼ାଇ) ପ୍ରତିମ ରୂପୀ ମା (ବୋଉ) ମୋ ପିଲାଟି ଦିନ ବଧେଇ କହିଥାନ୍ତି । ସିଂହ, ବାଘବଂଶର ପୁଅ ତୁ, ସେନାପତି ବଂଶର , ସିଂହ ବାଘ ପରି ପେଟେ ଖାଇ ଦେଏ । ନଖାଇବୁତ ଅଣ୍ଟାକୁ ବଳ ଆସିବ କେଉଁଠୁ । ସେନାପତି ହେବୁ, ସୈନ୍ୟଚାଳନା କରିବୁ, ଅପସଂସ୍କୃତି, ଦୁର୍ନିତୀ, ଅନ୍ୟାୟ, ଅତ୍ୟାଚାର, ଅପବାଦ ବିରୋଧରେ ଲଢ଼ିବୁ । ଏ ବଂଶ, ଏ ମାଟି ଏବଂ ଏଠାକାର ଅଧିବାସୀ ସବୁ ତୋର । ଏ ସବୁର ଟେକ, ସମ୍ମାନ ରକ୍ଷା କରିବା ତୋର ବଂଶଗତ ଦାୟିତ୍ୱ ଓ କର୍ତ୍ତବ୍ୟ । ଏଥିପାଇଁ ତୁ ଦାଣ୍ଡସେ ଖାଇ ଥାଟସେ ବସିବୁ । ଏଥିରୁ ପାଠକେ ଚିନ୍ତା କରନ୍ତୁ, ଏପରି ଧାରଣା ମୋ ଅନ୍ତର୍ ଆତ୍ମାରେ ବୋଉ ସୃଷ୍ଟି କଲାଦିନରୁ ସୋର ମାଟି, ଜଳବାୟୁ, ଏଠାକାର ଅଧିବାସୀ ଏବଂ ଦେବଦେବୀଙ୍କପ୍ରତି ଲେଖକଙ୍କ ହୃଦୟରେ କେତେ ସ୍ନେହ ଓ ଭକ୍ତି ନଥିବ ? ତାହା କେବଳ୍ ଲେଖକଙ୍କୁ ଜଣା ଏବଂ ଭୀମ ବଳ ଭୀମ ମାଙ୍କୁ



Digitized by PPRACHIN, SOA

ଜଣା ଭଳି ଲେଖକଙ୍କର ବୋଉ (ମା)ଙ୍କୁ ହିଁ ଜଣା ଥିଲା । ଅନ୍ୟମାନେ ତାହା ବୁଝିବା କଷ୍ଟକର ହେବ ।

ସୋର ମାଟି ଏବଂ ଶିଖପୁର ଦାଣ୍ଡଖେଡ଼ାଇଙ୍କର ଏକ ସ୍ୱତନ୍ତ୍ର ଇତିହାସ ରହିଛି । ଏହା କାହାରି ମନଗଢ଼ା କାହାଣୀ ନୁହେଁ କି କପୋଳକଳ୍ପିତ ନୁହଁ । ଏହା ପୂର୍ବର କୌଣସି ଜମିଦାର କିମ୍ବା ଏବର ପ୍ରତିଷ୍ଠିତ ଲୋକଙ୍କୁ ଭଲଭାବରେ ପ୍ରାୟ ଜଣାନଥିବ । କାରଣ ଆଜି ଆଖି ଆଗରେ ଓଡ଼ିଶା ମାଟିରେ ଅତୀତର ଯେତେ ଜମିଦାର ଦେଖାଯାଉଛନ୍ତି, ୧୮୮୭ ମସିହା ପୂର୍ବରୁ ସେମାନେ କେହି ଜମିଦାର ନଥିଲେ । ବ୍ରିଟିଶ ଶାସନ ବିରୋଧରେ ବିଦ୍ରୋହର ନିଆଁ ଜଳୁଥିବା ଅଶାନ୍ତ ଓଡ଼ିଶାରେ ଶାସନ ଜାହିର କରିବା ସହିତ ରାଜସ୍ୱ ଆଦାୟ ନିମିତ୍ତ ୧୮୮୭ ମସିହାର ସୂର୍ଯ୍ୟାସ୍ତ ଆଇନବଳରେ ତତ୍‌କାଳୀନ ବ୍ରିଟିଶ ସରକାର ପଶ୍ଚିମବଙ୍ଗରେ ନିଜର ମୁଖ୍ୟ ଦପ୍ତର ରଖି ଜମିଦାରୀ ନିଲାମ କରିଚାଲିଥିଲେ । ୧ମତଃ : ସେ ସମୟରେ ଗମନାଗମନର ଅସୁବିଧା, ୨ୟତଃ- ସେ ସମୟରେ ସଂଗ୍ରାମୀ ମନୋବୃତ୍ତିରେ ଥିବା ସ୍ୱାଭିମାନୀ ଓଡ଼ିଆବୀରମାନେ ବ୍ରିଟିଶ ସରକାରଙ୍କ ପାଖରୁ ଉକ୍ତ ଜମିଦାରୀକୁ ନିଲାମ ସୂତ୍ରେ ଗ୍ରହଣ କରିବାକୁ ଅପମାନିତ ମନେ କରୁଥିଲେ । ଏଣୁ ଜାନ ଯାଉ ମାନ ରହୁ ବା ଶିର ଦେଙ୍ଗେ ଶେର ନେହିଁ ଦେଙ୍ଗେ ନୀତିରେ ସେମାନେ ଇଂରେଜଙ୍କ ଦରବାରକୁ ଯିବାକୁ ପସନ୍ଦ କରୁନଥିଲେ । ସେ ସମୟରେ ଯେଉଁ ଓଡ଼ିଆମାନଙ୍କ ପୂର୍ବପୁରୁଷ ବେଙ୍ଗଲରେ ରହି ବିଭିନ୍ନ ପଦ୍ଧତିରେ ଜୀବିକା ନିର୍ବାହ କରି କିଛି ପୁଞ୍ଜି ସଞ୍ଚୟ କରିଥିଲେ ଓ କେତେକ ଅଣ ଓଡ଼ିଆ ନିଜପାଖରେ ଗଚ୍ଛିତ ରଖିଥିବା ସ୍ୱଳ୍ପ ଅର୍ଥରେ ପାନ ଗୁଆର ମୂଲ୍ୟତୁଲ୍ୟ ଦେଇ ବ୍ରିଟିଶ ସରକାରଙ୍କଠାରୁ ସୂର୍ଯ୍ୟାସ୍ତ ସମୟରେ ଯିଏ ଯାହା ପାରିଲା ଜମିଦାରୀ ନିଲାମ ନେଇ ତାଙ୍କର (ଇଂରେଜଙ୍କର) ଏଜେଣ୍ଟ ରୂପେ ପରିଚିତ ହୋଇ ଜମିଦାରର ସାର୍ଟିଫିକେଟ ପାଇଥିଲେ । ସେମାନେ କାହୁଁ ଜାଣିବେ ସୋର ମାଟିର ପୂର୍ବ ଗୌରବ ଗାରିମା କଥା ? ତା'ପରେ ସ୍ୱାଧୀନତାର ଏହି ବିଗତ ୬୦ ବର୍ଷ ମଧ୍ୟରେ ସାଧାରଣ ରାଜକୋଷରୁ ଦୁର୍ନିତୀ ପଦ୍ଧତିରେ ଅର୍ଥଶୋଷଣ କରିବାର ସୁଯୋଗ ପାଇ ଯେଉଁମାନେ ପ୍ରତିଷ୍ଠା ଲାଭ କରିଗଲେ ସେମାନେ କଣ



Digitized by PPRACHIN, SOA

ଜାଣନ୍ତି । କେବଳ କିଳା ପୁତେଇ, ଧ୍ୱପାବାଡ଼ୀ ବ୍ୟତୀତ ଅନ୍ୟ କିଛି ନୁହଁ । ସୋରରେ ଏବେ ବି ଲୋକମୁଖରେ ପ୍ରବାଦ ଅଛି - ତେଲି, ତାମିଳି, ଗୋଲା, ସୋରକୁ ଦେଲେ ପୁଲା । ଏହାର ଅର୍ଥ ପାଠକମାନେ ଭଲଭାବରେ ଜାଣିପାରୁଥିବେ । ରଜାଘର - ତାମିଳ, ମଣ୍ଡଳବାବୁଘର- ଗୁଲା ଓ ପ୍ରଶନ୍ନବାବୁ ଘର - ତେଲି । ଏମାନଙ୍କଠାରୁ ଅନ୍ୟମାନେ ମୌରସିଦାର ନେଇଥିଲେ ।

କିନ୍ତୁ ୧୭୫୧ ମସିହା ପୂର୍ବରୁ ଏ ଅଞ୍ଚଳ ମୋଗଲମାନଙ୍କ ଶାସନାଧିନ ଥିଲା । ଏଣୁ ସମୁଦ୍ର କୂଳେ କୂଳେ ଏ ଅଞ୍ଚଳକୁ ମୋଗଲବନ୍ଦି କୁହାଯାଉଥିଲା । ୧୭୫୧ରେ ମୋଗଲ ଓ ମରହଟ୍ଟାମାନଙ୍କ ମଧ୍ୟରେ ହୋଇଥିବା ସଂଘର୍ଷରେ ମୋଗଲମାନେ ଏ ଅଞ୍ଚଳରୁ ବିତାଡ଼ିତ ହୋଇ ମରହଟ୍ଟାମାନଙ୍କର ହିନ୍ଦୁ ସାମ୍ରାଜ୍ୟ ପ୍ରତିଷ୍ଠା ହୋଇଥିଲା । ଏହା କୌଣସି ମନଗଢ଼ା କଥା ନୁହେଁ । ଗବେଷକ ଡଃ. ସନାତନ ନାୟକଙ୍କ ରଜାହାଟ ଯାଇଥିଲି, ଲାଲ ନଗେନ୍ଦ୍ର କୁମାର ରାୟଙ୍କ ରଚିତ ୧୯୩୬ରେ ମୁଦ୍ରିତ 'ବିବିଧ ରତ୍ନ ସଂଗ୍ରହ' ଏବଂ ସୁବାସ ପାଣିଙ୍କ ରଚିତ "Glimpses of History & Culture of Balasore' (ଗ୍ଲିମ୍ପସେସ୍ ଅଫ୍ ହିଷ୍ଟୋରୀ ଏଣ୍ଡ କଲ୍‌ଚର୍ ଅଫ୍ ବାଲାଶୋର) ବହି ଦେଖିପାରନ୍ତି । ଏହା ବ୍ୟତୀତ ଆହୁରି କେତେକ ବହି ବି ଅଛି । ଯାହା ଲେଖକଙ୍କର ମନେ ନାହିଁ । ଅଥଚ ଦୃଷ୍ଟିକୁ ଆସିଛି । ଆକବରଙ୍କ ସେନାପତି ରାଜା ମାନସିଂହଙ୍କର ୧୫୯୦ ମସିହାରେ ଓଡ଼ିଶା ଆକ୍ରମଣ ପରଠାରୁ ୧୭୫୧ ପର୍ଯ୍ୟନ୍ତ ଏକପ୍ରକାର ଅସ୍ଥିର ମୋଗଲ ଶାସନ ଏ ଅଞ୍ଚଳରେ ଚାଲି ଆସୁଥିଲା । ଯାହାର କି ଅବସାନ ଘଟିଥିଲା ୧୭୫୧ ମସିହାରେ ।

ଶିରାପୁର ଦାଣ୍ଡଖେଡ଼ାଇ ସାମନା ଗୋହିରୀ, ଶିରାପୁରରୁ କେଶପୁର ଦେଇ ସାହନପୁରସ୍ଥ କାଂଶବାଂଶ ନଈକୁ ଲାଗିଥିବା ପ୍ରଶସ୍ତ ଗାଇଦାରିରେ ସେ ସମୟର ରାଜପଥ ଥିଲା । ଶ୍ରୀକ୍ଷେତ୍ର ପୁରୀକୁ ଯିବା ପାଇଁ ବାହାର ରାଜ୍ୟରୁ ତୀର୍ଥଯାତ୍ରୀମାନେ ହାତୀ, ଘୋଡ଼ା, ଓଟ, ଶଗଡ଼ ଆଦିରେ ଚଢ଼ି ବା ଚାଲିକରି ଆସୁଥିଲେ ଏହି ରାସ୍ତା ଦେଇ । ଶିରାପୁରସ୍ଥ ତତ୍କାଳୀନ ଉତ୍ତରପାର୍ଶ୍ୱ ସଦାବର୍ତ୍ତ ମଠରେ ବିଶ୍ରାମ ନେଉଥିଲେ ଥକ୍କା ମେଣ୍ଟାଇବା ପାଇଁ । ରାତ୍ରୀଯାପନ ତଥା ଭୋଜନ ପାଇଁ ମଠ ତରଫରୁ ସେମାନଙ୍କୁ ସଦାବର୍ତ୍ତ ଯୋଗାଇ



Digitized by PPRACHIN, SOA

ଦିଆଯାଉଥିଲେ । ଜଣ ପିଛା ଏକ ପାଆ ଚାଉଳ,ମୁଠେ ଡାଲି ତଥା ତେଲ, ଲୁଣ ଆଦି ସଉଦା ପାଇଁ ସେ ସମୟରେ ପ୍ରଚଳିତ ଥିବା ପଇସାର ଅଧା ଅଧୁଲିଟିଏ । କିନ୍ତୁ ପରିବର୍ତ୍ତିତ ସମୟରେ କେତେକ ସମସ୍ୟା ନେଇ ଗାଁ ମେଳି ହେବାରୁ ଉକ୍ତ ମଠ ଏବେ ସୋର ବଜାରସ୍ଥ ମୋବାରକପୁର (ସେ ସମୟର ଗୋସେଇଁ ବଜାର)କୁ ଉଠି ଯାଇଛି ବହୁଦିନରୁ । ନଅଙ୍କ ଦୁର୍ଭିକ୍ଷ ସମୟରେ ଲୋକଙ୍କୁ କାମ ଯୋଗାଇବା ପାଇଁ୧୮୬୬ ମସିହାରେ ଇଂରେଜମାନଙ୍କ ଦ୍ୱାରା ଗ୍ରାଣ୍ଡଟ୍ରଙ୍କ ରୋଡ୍ ବା ଜଗନ୍ନାଥ ସଡ଼କ ନିର୍ମାଣ ହେବା ପରେ ଏ ରାସ୍ତା ବା ରାଜଦାଣ୍ଡ ବନ୍ଦ ହୋଇ ଏହା ଗୋହିରୀ ଏବଂ ସମୟାନୁକ୍ରମେ ଗାଇ ଦାଣ୍ଡିରେ ପରିଣତ ହୋଇଯାଇଛି ଏହି କେଇଶହ ବର୍ଷକ ଭିତରେ ।

ସୋର ମାଟିର ପ୍ରତି ଗାଁ, ପ୍ରତି ସ୍ଥାନର ଏପରିକି ଧୂଳିକଣାରେ ମଧ୍ୟ ଏକ ବିଶେଷତ୍ୱ ରହିଛି । ସେ ସମ୍ବନ୍ଧରେ ଆମ୍ଭର ଦାୟାଦ ବା ଉତ୍ତରାଧିକାରୀମାନେ ସମ୍ପୂର୍ଣ୍ଣ ଭାବରେ ଅବଗତ ରହିବା ଉଚିତ୍ । କାରଣ ଜନ୍ମଭୂମି ସମ୍ବନ୍ଧରେ ଯାହାର ଜ୍ଞାନ ନଥାଏ, ଯେତେ ଶିକ୍ଷାଗତ ଯୋଗ୍ୟତାର ପ୍ରମାଣପତ୍ର ହାସଲ କଲେବି ସେ ଅଜ୍ଞାନୀଙ୍କ ସଙ୍ଗେ ସମାନ । ଟୀର ପ୍ରବାହିତ କାଂଶବାଂଶ ନଈ ହିଁ ସୋରର ଦକ୍ଷିଣ ସୀମା । ଏହାର ଦକ୍ଷିଣ ପଟ ସୀମାରୁ ଠାକୁର ରାଜାଙ୍କର ରାଜ୍ୟ ଆରମ୍ଭ । ଏଣୁ କାଂଶବାଂଶ ନଈ ପାର ହେବା ପାଇଁ ଏକ ପୋଲ ଥାଏ ଓ ଏବେ ବି ଅଛି । ଏହା ଥିଲା ସେ ସମୟରେ ସୋରର ପ୍ରବେଶ ଦ୍ୱାର । ଏହାକୁ ଶଙ୍ଖପୋଲ କୁହାଯାଏ । କାରଣ ଦକ୍ଷିଣ ଦିଗରୁ ଶତ୍ରୁ ଆସି ଏହି ପୋଲ ପାଖରେ ପହଞ୍ଚିଲେ ଏଠାକାର ପ୍ରହରୀ ଶଙ୍ଖନାଦ କରି ସାଜନପୁରରେ ଥିବା ପାଇକ ସର୍ଦ୍ଦାରଙ୍କୁ ଜଣାଇଦିଅନ୍ତି । ଉକ୍ତ ଦ୍ୱାରକୁ ଜଗିବା ପାଇଁ ସଦାସର୍ବଦା ସଜବାଜ ହୋଇ ପାଇକମାନେ ଏହି ଗାଁରେ ରହୁଥିବାରୁ ଏହାକୁ ସାଜନପୁର କୁହାଯାଉଥିଲା । ପାଇକ ସର୍ଦ୍ଦାର ସହସା ନିଜ ପାଇକମାନଙ୍କୁ ପ୍ରତିରୋଧ ନିମିତ୍ତ ଶଙ୍ଖପୋଲ ପାଖକୁ ପଠାଇ ଦେଇ ଏକ ଶଙ୍ଖନାଦ କରୁଥିଲେ । ଯେଉଁ ନାଦ କି ମଣିଷର କେଶରୂପି ରାଜ୍ୟର କେଶପୁରରେ ପ୍ରତିନିଧିତ୍ୱ ହେଉଥିଲା । ଉକ୍ତ ଶଙ୍ଖନାଦ ଶୁଣି କେଶପୁର



Digitized by PPRACHIN, SOA

ସର୍ଦ୍ଦାର ଅବଗତ ହେଉଥିଲେ କି ସୀମାନ୍ତକୁ ବିପଦ ଆସିଛି । ତହୁଁ ତାଙ୍କ ଅଧିନରେ ଥିବା ପାଇକମାନଙ୍କୁ ବିହିତ ବ୍ୟବସ୍ଥା ସହିତ ଶତ୍ରୁକୁ ପ୍ରତିରୋଧ କରିବା ପାଇଁ ନିର୍ଦ୍ଦେଶ ଦେଇ, ଏକ ଶଙ୍ଖନାଦ କରୁଥିଲେ । ଯେଉଁ ନାଦକି କେଶ ତଳକୁ ଶିର ଅର୍ଥାତ୍ ଶିରରୂପୀ ଶିରାପୁରରେ ପ୍ରତିଧ୍ୱନିତ୍ୱ ହେଉଥିଲା । ଶିରାପୁରସ୍ଥ ସର୍ଦ୍ଦାର ନିଜ ଅଧିନସ୍ଥ ପାଇକମାନଙ୍କୁ ଆବଶ୍ୟକ ନିର୍ଦ୍ଦେଶ ଦେଇ ଶତ୍ରୁମାନଙ୍କୁ ସେହିଠାରେ ମାରିବାର ବ୍ୟବସ୍ଥା କରିଥାଆନ୍ତି । ମଣିଷ ଶିରରେ ଯେପରି ଅସଂଖ୍ୟ ଶିରା ପ୍ରଶିରା ଥାଏ, ଶିରାପୁରରେ ସେହିପରି ଅସଂଖ୍ୟ ଗଳିକନ୍ଦି ଅଛି । ଯାହାର ଆରମ୍ଭ ଓ ଶେଷ ମୁଣ୍ଡ ମିଳେ ନାହିଁ । ଶତୃପକ୍ଷ ସୈନ୍ୟମାନେ ଉକ୍ତ ଗଳି ବିଷୟରେ ସମ୍ପୂର୍ଣ୍ଣ ଅନଭିଜ୍ଞ ଥିବାରୁ ଥରେ ପଶିଗଲେ ସେହିଠାରେ ହିଁ ସେମାନଙ୍କୁ ବାଟବଣା କରାଇ ଦାଣ୍ଡ ଖେଡ଼ାଇଙ୍କ ନାମରେ ବିଭିନ୍ନ ଉପାୟରେ ହତ୍ୟା କରାଯାଇଥାଏ । ରାଜ୍ୟର ଶିର ଶିରାପୁରକୁ ଜଗିବା ପାଇଁ ଏଠାକାର ପାଇକମାନେ ପ୍ରତିଦିନ ମା ଖେଡ଼ାଇଙ୍କୁ ପୂଜା ଦେଇ ଖାଡ଼ା ପ୍ରହରା ଦେଉଥିବାରୁ ଦେବୀଙ୍କ ନାମ ରଖାଯାଇଥିଲା ଦାଣ୍ଡଖେଡ଼ାଇ । ଉପରୋକ୍ତ କେଶପୁରରେ ଲେଖକଙ୍କର ଆଦ୍ୟ ଶିକ୍ଷାଗୁରୁ ଶ୍ରୀ ପଞ୍ଚାନନ ପୁଇ, ଯିଏ ଖଡ଼ି ଧରାଇ ଶିଖାଇ ଥିଲେ । ତାଙ୍କ ପରେ ଶିରାପୁର ବରହମପୁରରୁ ଜଣେ ଶିକ୍ଷକ ଥିଲେ ସୁରେନ୍ଦ୍ର ନାମରେ । ସେ ଛୋଟେଇ ଛୋଟେଇ ଚାଲଥିବାରୁ ଲୋକେ କହୁଥିଲେ ଛୋଟା ମାଷ୍ଟ୍ରେ ।

ଏ ଦାଣ୍ଡ ଖେଡ଼ାଇଙ୍କର ପ୍ରଭାବ ସେ ସମୟରେ ବହୁତ ଅନୁଭୂତ ହେଉଥିଲା । ଅନ୍ୟ କେହି ବୟସ୍କ ଲୋକ ବି ଅନୁଭବ କରିଥିବେ । ଗୋସେଇଁ ବାପାମାନେ କହିଛନ୍ତି କାଞ୍ଚିବିଜୟ ସମୟରେ ପୁରୁଷୋତ୍ତମଦେବଙ୍କ ସହିତ ଜଗନ୍ନାଥ ରହି ଯୁଦ୍ଧ କଲା ଭଳି ମା ଦାଣ୍ଡଖେଡ଼ାଇ ସଦା ସବଦା ଆମ ପାଇକ ମାନଙ୍କ ସହିତ ରହି ଯୁଦ୍ଧ କରିଥାନ୍ତି । ମା ଆମ ରାଇଜର ପ୍ରତିଷ୍ଠିତ ଦେବୀ ଡାକ ଶୁଣିଥାନ୍ତି । ଏ ଲେଖକ ନିଜେ ଅନୁଭବ କରିଛନ୍ତି । ଦିନକର ଘଟଣା । ସେ ସମୟରେ ୨୪/୨୫ ବର୍ଷ ହୋଇଥାଏ ଲେଖକଙ୍କର । ଅନ୍ଧାର ପକ୍ଷକୁ ଘିଟିଘିଟିଆ ଅନ୍ଧାରୁଆ ବର୍ଷାରାତି ରାତି ପ୍ରାୟ ଘ ୧ଟାକୁ କିଛି ଉପର ହେବ । ରାସ୍ତାଘାଟର ଏତେ ଉନ୍ନତ ନଥିଲା । ଏପରିକି ଶିରାପୁର ରାସ୍ତାରେ



Digitized by PPRACHIN, SOA

ମେଣ୍ଢାଲ ବି ପଡ଼ିନଥାଏ । ସେ ସମୟରେ ନିର୍ଜନତାରୁ ଚଡ଼କମରା ପୋଲ ପାଖରେ ଡକାୟତ ହେଉଥିଲା । ସେଠାକାର ନିଛାଟିଆ ବର ଅଶ୍ୱତ୍ଥ ଗଛରେ ଭୂତ ଥିବାର ଭୟ ମଧ୍ୟ ଲୋକମାନଙ୍କ ମନରେ ଥିଲା । ରାତ୍ରୀ ୭/୮ ଘଟିକା ସମୟକୁ ସେବାଟେ ଦେଇଲୋକେ ଯିବା ଆସିବା ପ୍ରାୟ ଏକ ପ୍ରକାର ବନ୍ଦ ହୋଇଯାଇଥାଏ । ସେଦିନ ପରିସ୍ଥିତି ଚକ୍ରରେ ପଡ଼ି ପ୍ରବଳ ବର୍ଷା ସାଙ୍ଗକୁ ଅନ୍ଧାର ପକ୍ଷରେ ଏକୁଟିଆ ଚାଲି ଚାଲି ଆସୁଥିଲି । ଭୟରେ ଶିବଙ୍କ ନାମ ମନେ ମନେ ନେଇ । ଅନ୍ଧାର ଭିତରେ କିଛି ସୁରାକ ପାଇ ଚଡ଼କମରା ପୋଲ ପାଖରେ ଥିବା ସେହି ବରଗଛ ମୂଳରେ ଠିକିଏ ଦବିଗଲି । ଆଗକୁ ଆଉ ଗୋଡ଼ ଉଠିଲା ନାହିଁ କିମ୍ବା ପଛକୁ ସାଇନପୁର ପର୍ଯ୍ୟନ୍ତ ଫେରିବାକୁ ମନରେ ବଳ କି ସାହସ ହେଲା ନାହିଁ । ସଙ୍ଗେ ସଙ୍ଗେ ମନେ ପଡ଼ିଗଲା ମା ଦାଣ୍ଡଖେଡ଼ାଇ ପ୍ରତ୍ୟେକ୍ଷ ଦେବୀ ପୁଣି ଆମ ପାଇକମାନଙ୍କର ଦେବୀ । ଆମ ପୂର୍ବପୁରୁଷଙ୍କ ସହିତ ରହି ଯୁଦ୍ଧ କରିଛନ୍ତି ରଣକ୍ଷେତ୍ରରେ । ଏଠି କଣ ତାଙ୍କର ଦାୟାଦକୁ ସାହା ହେବେ ନାହିଁ । ମନେ ମନେ ଦେବୀଙ୍କୁ ସ୍ମରଣ କଲି । ସବୁଆଡ଼େ ଶୂନ୍‌ଶାନ୍ । କେହି ବିଶ୍ୱାସ କରିବେ କି ନାହିଁ ଲେଖକଙ୍କୁ ଜଣା ନାହିଁ । ହଠାତ୍ ଏକ ଝୁଣା ବାସନା ଆସିଲା । ସୁଲସୁଲିଆ ପବନ ସହିତ । ପୂର୍ବପଟ ଗହିରୀ ବିଲରୁ ଶୂନ୍ୟବାଣୀ ଆସିଲା 'ନିର୍ଭୟରେ ଆ, ମୁଁ ଆଗେ ଆଗେ ଯାଉଛି ।' ମଣିଷର ପାଟି ଶୁଣି ଛାତିରେ ସାହାସ ଆସିଲା । ଦମ୍ଭ ଧରିଲି । ଶିରାପୁର ରାସ୍ତାରେ ଚାଲିଥାଏ । ମୋ ସହିତ ବି ଝୁଣା ବାସନା ଚାଲିଥାଏ । କେଉଁଠୁ ଝୁଣା ବାସନା ଆସୁଛି, ଜାଣିବାକୁ ବହୁତ ଚେଷ୍ଟା କଲି, ହେଲେ ନିର୍ଜନ ଅନ୍ଧାରରେ ସବୁ ବ୍ୟର୍ଥ ହେଲା । ମନରେ ବି ବହୁତ ପ୍ରକାର ପ୍ରଶ୍ନ ଉଠୁଥିଲା । ଝୁଣାବାସ୍ନା ବାଟସାରା କିଏ ଦେଉଛି ଓ କାହିଁକି ଦେଉଛି ପୁଣି ଏତେ ରାତିରେ, ଏ ମେଘୁଆ ପାଗରେ । ଏହିପରି ଭାବୁ ଭାବୁ ଗୋପୀନାଥପୁରସ୍ଥ ଦୁର୍ଗାଚରଣ ପୋଖରୀ ଧରିବା ପର୍ଯ୍ୟନ୍ତ ସେ ଝୁଣା ବାସ୍ନା ଥିଲା । ଏଠି ପୁଣି ଶବ୍ଦ ଆସିଲା ଏକ ନାରୀ କଣ୍ଠସ୍ୱର, 'ଏବେ ଯାଆ, ଆଉ କିଛି ନାହିଁ, ମୁଁ ଯାଉଛି ।' ପୁଣି ମନରେ ପ୍ରଶ୍ନ ଆସିଲା, ଏ କାହାର ପାଟି ଶବ୍ଦ ? ମା ଦାଣ୍ଡଖେଡ଼ାଇଙ୍କର ନୁହଁକି ? ଏ ସବୁ କାଲିର ପରି ଘଟଣା ଭଳି ମନେ ଅଛି । ମା ପ୍ରତ୍ୟେକ୍ଷ



Digitized by PPRACHIN, SOA

ଦେବୀ, ଏହା ଅସ୍ୱୀକାର କରିହେବ ନାହିଁ । ଅଦୃଷ୍ଟରେ ରହି ସେ ଭକ୍ତମାନଙ୍କୁ ଆଶିଷ କରିଥାଆନ୍ତି । ସାହସ ଦିଅନ୍ତି । ପରଖିଲେ ସମସ୍ତେ ଜାଣିପାରିବେ । ଏ ବିଶ୍ୱାସବି ଅଛି ।

ଶତୃପକ୍ଷ ଯଦି କୌଣସି ମତେ ଶିରାପୁରକୁ ଅତିକ୍ରମ କରି ନଅର ଆଡ଼କୁ ଅଗ୍ରସର ହୁଏ ତେବେ ସେମାନଙ୍କୁ ସେହି ଗାଁ ମୁଣ୍ଡରେ ଉଡ଼ାଇ ଦେବା ପାଇଁ ଖିରିସାଣି ପାଖରେ ଦୁଇପଟେ ଦୁଇଟି ଉଚ୍ଚ ଢିପ ଥିଲା । ତାହା ଉପରେ କମାଣ ରଖାଯାଉଥିଲା । ଯାହାକୁ ଏବେ ଅରୁଣ ବାରିକ ଘର ପଟା ନେଇ ରୂପ ବଦଳାଇ ଦେଇଛନ୍ତି । ଶିରାପୁରସ୍ଥ ସର୍ଦ୍ଦାର ଯେଉଁ ଶଙ୍ଖନାଦ କରନ୍ତି ତାହା ଶିର ତଳକୁ ଥିବା ତୁଣ୍ଡପଡ଼ାରେ ପ୍ରତିଧ୍ୱନିତ ହେଉଥିଲା । ତୁଣ୍ଡପଡ଼ାର ସର୍ଦ୍ଦାର ଶଙ୍ଖଧ୍ୱନି ଦେଇ ନଅରର ହୃଦୟସ୍ଥ ଭୟାସାହିରେ ଥିବା ସେନାପତିଙ୍କ କର୍ଣ୍ଣଗୋଚର କରାଉଥିଲେ । ଏବେ ବି ଲୋକମୁଖରେ ଛକ ପାଖରେ ଭୟାସାହି ଡାକ ଅଛି । ଶଙ୍ଖନାଦରୁ ରାଜ୍ୟ ଉପରେ ଆକ୍ରମଣର ଅବଗତି ହୋଇ ସେନାପତି ସିଙ୍ଗାନାଦ କରୁଥିଲେ । ଏହାକୁ ଶିବ ଦତ୍ତ ସିଙ୍ଗା ବୋଲି କୁହାଯାଉଥିଲା । (ଯାହା ଶିବଙ୍କ ହାତରେ ଥାଏ । ) ଉକ୍ତ ଶିଙ୍ଗାନାଦ ନଅରର ଦକ୍ଷିଣ ପାର୍ଶ୍ୱରେ ପୂର୍ବପଟକୁ ଥିବା ଖଣ୍ଡାସାହି (ଖଡ୍‌ଗବାହିନୀ), ଘୋଡ଼ାସାହି (ଅଶ୍ୱବାହିନୀ), କୋଦଣ୍ଡପୁର (ଧନୁର୍ବାହିନୀ) ଓ କମାଣପୁର (କମାଣବାହିନୀ) ଏବଂ ପାଇକସାହି (ନଅର ରକ୍ଷା ଦାୟିତ୍ୱରେ ଥିବା ପାଇକ) ପାଇକ ମାନଙ୍କ କର୍ଣ୍ଣଗୋଚର ହେଉଥିଲା । ତତ୍‌ପରେ ସେମାନେ ସଜବାଜ ହୋଇ ଆସି ବାରପଡ଼ା ନାୟକାଣୀଙ୍କୁ ପୂଜା ଦେଇ ସେନାପତିଙ୍କ ନିର୍ଦ୍ଦେଶକ୍ରମେ ସର୍ଦ୍ଦାରମାନଙ୍କ ନେତୃତ୍ୱରେ ସଂଗ୍ରାମ କ୍ଷେତ୍ରରେ ବିଭିନ୍ନ ସ୍ଥାନର ପଏଣ୍ଟକୁ ଯାଉଥିଲେ । ସେ ସମୟରେ ସୋର ପାଇକମାନଙ୍କୁ ପରିଚାଳନା କରିବା ପାଇଁ ଜଣେ ସେନାପତିଙ୍କ ଅଧିନରେ ୨୧ଜଣ ସର୍ଦ୍ଦାର ୬ ଜଣ ପ୍ରଧାନ ଥିଲେ । ଯୁଦ୍ଧକ୍ଷେତ୍ରକୁ ସରହତ ଯୋଗାଇବା ପ୍ରଧାନ ଓ ବେହେରାମାନଙ୍କ ଦାୟିତ୍ୱ ଓ କର୍ତ୍ତବ୍ୟ ଥିଲା ।ପାଇକ ଯୋଗାଇବା ଲାଗି ପଲେଇ ଓ ଦଳେଇଙ୍କ ଉପରେ ଦାୟିତ୍ୱ ନ୍ୟସ୍ତ ଥିଲା । କମରରେ ସଦା ଅସ୍ତ୍ର ଖୋସି, କମର ଭିଡ଼ି ନଅରର ଉତ୍ତର ଦ୍ୱାରକୁ ପ୍ରହରା ଦେଉଥିବାରୁ ନାମ ତାର ହେଉଛି କମରପୁର ।



Digitized by PPRACHIN, SOA

ଉଲ୍ଲସଖଡ଼ପୁର ଗ୍ରାମର ଲୋକମାନେ ଉଲ୍ଲାସ ଚିତ୍ତରେ ଖଡ଼ଗ ଚାଳନାରେ ସିଦ୍ଧହସ୍ତ ଥିବାରୁ ସେହି ଗାଁର ନାମ ରଖାଯାଇଥିଲା ଉଲ୍ଲାସ ଖଡ଼ପୁର । ସେ ସମୟର ସାଧବପୁଅଙ୍କ ବାସସ୍ଥାନକୁ ଏବେ ସାଧୁଆପଡ଼ା କୁହାଯାଉଛି । ସରଶଙ୍ଖ ଅଧିବାସୀ ଯୁଦ୍ଧରେ ବ୍ୟବହାର ହେଉଥିବା ସର ଯୋଗାଇ ଦେଉଥିବାରୁ, ସେ ସମୟରେ ଯୁଦ୍ଧରେ କରାଯାଉଥିବା ଶଙ୍ଖନାଦର ବାଦକ ସରଶଙ୍ଖ ମଧ୍ୟରେ ଥିବାରୁ ନାମ ତାର ରଖାଯାଇଥିଲା ସରଶଙ୍ଖ । ନିକଟସ୍ଥ ଦହିପୁରରୁ ରାଜବାଟିକୁ ଘୋଳଦହି ଆସୁଥିବାରୁ ନାମ ତାର ଥିଲା ଦହିପୁର । ଦହିସଡ଼ାରୁ ବସାଦହି ଆସୁଥିବାରୁ ନାମ ରଖାଯାଇଥିଲା ଦହିସଡ଼ା । ଏବର ବାଘ୍ହାପୁର ଓ ଖିରକୋଣୀ ସେ ସମୟରେ ଘଞ୍ଚ ଜଙ୍ଗଲ ଓ ଚାରଣ ଭୂଇରେ ପୂର୍ଣ୍ଣ ଥିଲା । ବାଘ୍ହାପୁର ଜଙ୍ଗଲରେ ବାଘ୍ହା ରହୁଥିଲେ । ଶିକାର ନିମିତ୍ତ ସେଠାକୁ ଯିବାକୁ ପଡୁଥିଲା । ଖିରକୋଣୀରେ ବହୁ ଗୋରୁ ମହିଷୀ ଆଦି ରହୁଥିବାରୁ ସେଠାରୁ ରାଜ ଭବନକୁ କ୍ଷୀର ଆସୁଥିବାରୁ ତାର ନାମ ରଖାଯାଇଥିଲା ଖିରକୋଣୀ । ବାଗୁଡ଼ି ପାହାଡ଼ ପାଖରେ ଥିବା ମେଣ୍ଢାଗଡ଼ିଆରୁ ଉଆସକୁ ମେଣ୍ଢା, ଛେଳି ମାଂସ ଆଦି ଆସୁଥିଲା ଏଣୁ ନାମ ରଖାଯାଇଥିଲା ମେଣ୍ଢାଗଡ଼ିଆ । ଉଆସର ହାତୀମାନେ ଗଞ୍ଜ ପର୍ଯ୍ୟନ୍ତ ଚରିବା ପାଇଁ ମାଡି ଯାଉଥିବାରୁ ନାମ ତାର ହାତୀମାଡି ଗଞ୍ଜ ରଖାଯାଉଥିଲା । ମୂଳିସିଂରେ ଶତ୍ରୁମାନଙ୍କୁ ମୁକାବିଲା କରିବା ପାଇଁ ଏବେ ବି ମାଟିତଳେ ପୋତିଯାଇଥିବା ପକ୍କା ବଙ୍କରମାନ ଦେଖିବାକୁ ମିଳେ । ସେ ସମୟରେ ବଡ଼ଖୁରୀରେ ବହୁ ପରିମାଣରେ ରବି ଫସଲ ହେଉଥିଲା । ଉଆସର ଲୋକଙ୍କ ଆହାର ପାଇଁ ଖିରିପୁରୀ ତରକାରୀ ଯୋଗାଇ ଦେଉଥିବାରୁ ନାଁଟି ତାର ବଡ଼ଖୁରୀ । ତୁଣ୍ଡପଡ଼ାର ଉର୍ବର ଜମିରୁ ତୁଣ୍ଡକୁ ପୁରା ଆହାର ଆସୁଥିବାରୁ ନାମ ତୁଣ୍ଡପଡ଼ା । କଣ୍ଟିପୁର କେବଳ ଚାଷକାମ ପାଇଁ ଖ୍ୟାତ ତ୍ବବାରୁ ଲଙ୍ଗଳର କଣ୍ଟି ଅନୁଯାୟର ନାମ ରହିଥିଲା କଣ୍ଟିପୁର । ଏକ ନଗର ତଳି ଗାଁ ଥିବାରୁ ନାମ ଥିଲା ତଳନଗର । ଉତ୍ତରେଶ୍ୱର ହିଁ ସୋର ନଗରର ଉତ୍ତରପଟ ପ୍ରବେଶ ଦ୍ୱାର ଥିଲା ।

ବାମ ଅଙ୍ଗ ହେଉଛି ବିଳାସ ବ୍ୟସନର ଅଙ୍ଗ ବା ସ୍ତ୍ରୀ ଅଙ୍ଗ ବୋଲି କହନ୍ତି । ଏଣୁ ସୋର ସହରର ବାମ ପାର୍ଶ୍ୱରେ ବା ପଶ୍ଚିମ ଦିଗକୁ ନଟାପଡ଼ା,



Digitized by PPRACHIN, SOA

ଉଆସର ନର୍ତ୍ତକରମାନେ ସେଠାରେ ରହୁଥିଲେ । ରଙ୍ଗପତି ଉଆସର ସାଜସଜ୍ଜା କରୁଥିବା ଲୋକେ ସେଠାରେ ରହୁଥିଲେ ଏବଂ ରାଧାବଲ୍ଲଭପୁର, ଯେଉଁଠି ଦିନେ ରାଧାମାନଙ୍କର ପ୍ରାବଲ୍ୟତା ଥିଲା, ଯେଉଁ ଚିନ୍ତାଧାରାର ପ୍ଲାନିଂରେ ସୋର ରାଜନଗର ବସାଯାଇଥିଲା, ତାହା ଓଡ଼ିଶାର ଅନ୍ୟ କେଉଁଠି ଦେଖାଯାଏନାହିଁ । ଏହା ଥିଲା ସେ ସମୟର ଅତ୍ୟାଧୁନିକ ସହର । ସୋରର ନଗରକୁ ତତ୍‌କାଳୀନ ଶତ୍ରୁଙ୍କ ଆକ୍ରମଣରୁ ରକ୍ଷା କରିବା ଲାଗି ନଗର ଚାରିପଟେ ବଡ଼ ବଡ଼ ପୋଖରୀମାନ ଖୋଳାଯାଇ ପ୍ରତି ପୋଖରୀର ଗୋଟିଏ ପଟର ଆଡ଼ିକୁ ଅତି ଉଚ୍ଚ କରାଯାଇ ତାହା ଉପରେ କମାଣ ରଖାଯାଉଥିଲା । ପୋଖରୀ ଆଡ଼କୁ କମାରର ପଛ ପଟକୁ ରଖାଯାଉଥିଲା । ଶତ୍ରୁପକ୍ଷ ସୈନ୍ୟ ସାମ୍ନା ପଟୁ ଆସିଲେ କମାଣର ମୁଖରୁ ବାହାରୁଥିବା ଗୋଳାରେ ପଡ଼ି ମରୁଥିଲେ । କମାଣର ପଛ ପଟୁ ଆକ୍ରମଣ ଯଦି କେହି କରୁଥିଲେ ଗଭୀର ପୋଖରୀର ଜଳରେ ପକାଇ ସେମାନଙ୍କୁ ହତ୍ୟା କରାଯାଉଥିଲା । ନଗର ଚାରିପଟେ ଛାଡ଼ି କେତେକ ଘାଟି ସ୍ଥାନରେ ମଧ୍ୟ ବଡ଼ପୋଖରୀ ଖୋଳାଯାଇ କମାଣ ରଖାଯାଇଥିଲା । ସେ ପୋଖରୀ ଗୋଡ଼ିକ ହେଲା, ଯଥା - ୧- ଖିରସାଣୀ, ୨-ବଡ଼ପଣ୍ଡୁଆ, ୩- ସାନପଣ୍ଡୁଆ, ୪- ତେଲିଆ, ୫- ଅସୁରା, ୬- ସାଜନପୁର ପୋଖରୀ, ୭- ମୂଳିସିଂ, ୮- ବଡ଼ପୋଖରୀ, ୯- ବୌଳପୋଖରୀ, ୧୦- ରହଣିଆ, ୧୧- ନହର, ୧୨- ବଗଜଟିଆ, ୧୩- କୁଣ୍ଡ, ୧୪- ଛାମୁଡ଼ା, ୧୫- ଦ୍ୱାରିକା (ଦକ୍ଷିଣ ଦ୍ୱାର ଦେଶରେ ଥିବାରୁ ଦ୍ୱାରିକା) ଇତ୍ୟାଦି ୨୧ଟି ପୋଖରୀ ସୋର ସହର ଚାରିପଟେ ରଖାଯାଇଥିଲା ।

ସୋରର ଏପ୍ରକାର ଗୌରବ, ସୌରଭର ମୂକସାକ୍ଷୀ ରୂପେ ଠିଆହୋଇ ଶିରାପୁରର ମା ଦାଣ୍ଡ ଖେନାଇକୁ ଆଜି ଆଣି ଦାଣ୍ଡ ଖେଳାଇରେ ପହଞ୍ଚାଇ କେତେକ ଅବାଞ୍ଛିତ ଯୁକ୍ତି ବାଢ଼ୁଛନ୍ତି । ଯାହାକି ସୋରବାସୀଙ୍କ ସମ୍ମାନ ଉପରେ ଆଞ୍ଚ ଆଣୁଛି ଓ ଭବିଷ୍ୟତ ପିଢ଼ି ଅଜ୍ଞାନ ଅନ୍ଧାର ଭିତରକୁ ଚାଲି ଯାଉଛନ୍ତି । ଏ ପ୍ରକାର ଉଦ୍ୟମକୁ ଦୃଢ଼ତାର ସହ ପ୍ରତିହତ କରିବାର ଅଛି ।



Digitized by PPRACHIN, SOA

ତାହା ନହେଲେ ଭବିଷ୍ୟତକୁ ଅଯୋଧ୍ୟାର ରାମମନ୍ଦିର, ବାବ୍ରି ମସ୍‌ଜିଦ୍, ମଥୁରାର କୃଷ୍ଣ ମନ୍ଦିର ଓ ମସ୍‌ଜିଦ୍, ସୋର ଛତ୍ରପୁରସ୍ଥ ରାଜବାଟି ଏବର ତାମିକି ଜମିଦାର ରାଜାଘର ଆଉ ଆର୍, ଆଇ କୋଠାଘର ଭଳି, ଖେଡ଼ାଇ ମଧ୍ୟ ଏକ ତର୍କ ବିତର୍କର ବିଷୟବସ୍ତୁ ହୋଇ ରହିଯିବେ ଭବିଷ୍ୟତକୁ । ଏ ଦିଗରେ ଲୋକଙ୍କୁ ସଦ୍‌ବୁଦ୍ଧି ଓ ସାମର୍ଥ୍ୟ ଦେବାପାଇଁ ଆଜିର ଦୁର୍ଦ୍ଦିନରେ କେବଳ ମା ଦାଣ୍ଡଖେଡ଼ାଇଙ୍କର ଅଦୃଶ୍ୟ ଶକ୍ତି ହିଁ ସାହା ହେବେ ଏବଂ ତାଙ୍କର ଯଜ୍ଞ ଜ୍ୟୋତିରୁ ଲୋକଙ୍କର ଜ୍ଞାନର ଜ୍ୟୋତି ହିଁ ବିକଶିତ ହେଉ । ମା ଖେଡ଼ାଇଙ୍କଠାରେ ଏ ଲେଖକଙ୍କର ଏତିକି ମାଗୁଣି ।

## ସାମାଜିକ ଚଳଣୀ :

ବନ୍ଧୁବାନ୍ଧବ ବା ଅତିଥି ଅଭ୍ୟାଗତ, କୁଣିଆ ଆଦି ସୋରବାସୀଙ୍କ ଘରକୁ ଆସିଲେ ପରିବାରରେ ଆନନ୍ଦର ଲହରୀ ଖେଳିଯାଇଥାଏ । ପିଲାଙ୍କଠାରୁ ବୟସ୍କ ପର୍ଯ୍ୟନ୍ତ ସମସ୍ତେ ଚର୍ଚ୍ଚାରେ ଲାଗିପଡ଼ନ୍ତି । ଆଗନ୍ତୁକମାନଙ୍କ ଖାଦ୍ୟପେୟ ଲାଗି ମୁଖ୍ୟତଃ ମାଛ ତରକାରୀ, ଡାଲି, ବିଭିନ୍ନ ପ୍ରକାର ପରିବାର ଘାଣ୍ଟ, ଦହିକାଞ୍ଜି, ଶାକର, ଶାଗ, ଭଜା ଆଦିର ବ୍ୟବସ୍ଥା କରିଥାନ୍ତି । ଅତିଥି ଚର୍ଚ୍ଚାରେ କେହି କାର୍ପଣ୍ୟତା ପ୍ରଦର୍ଶନ କରିନଥାନ୍ତି । ସୋରବାସୀ ପ୍ରଚୁର ମାଛ ଖାଇବାକୁ ସୁଯୋଗ ପାଉଥିବାରୁ ପୂର୍ବେ ଏହା ମତ୍ସ୍ୟରାଜ୍ୟ ରୂପେ ପରିଚିତ ଥିଲା । ଉଭୟ ସମୁଦ୍ର ଓ ଦେଶୀ ମାଛ ପ୍ରଚୁର ଭାବରେ ମିଳୁଥିଲା । ମାଛ ଖାଇ ଉଦ୍‌ବୃତ ମାଛକୁ ଶୁଖୁଆ କରିଦେଉଥିଲେ । ଚାଷକ୍ଷେତ୍ରରେ ଆଧୁନିକ ବୈଜ୍ଞାନିକ ପଦ୍ଧତିରେ ସାର, ବିଷ ପ୍ରୟୋଗ କରାଯାଉଥିବାରୁ ଏବେ ଜନ୍ମ ସମୟରୁ ଦେଶୀ ମାଛ, କଙ୍କଡ଼ା ଆଦି ମରିଯାଉଥିବାରୁ ପୂର୍ବଭଳି ମାଛ ବିଲବାଡ଼ିରୁ ମିଳୁନାହିଁ । ମାଛ ଏମାନଙ୍କର ଅତିପ୍ରିୟ ଖାଦ୍ୟ ଥିଲା । ସାଧାରଣ ଓ ଗରିବ ଶ୍ରେଣୀୟ ଲୋକଙ୍କ ଘରେ ପଖାଳ, ଶାଗ, ଶୁଖୁଆ, ତୁରାଣୀ କାଞ୍ଜି, ତାଟିଆବସା, ଫତୁଆ, ଆମ୍ବୁଳ ରାଇ, ଚଟଣୀ, ଖୁଦପାଣି, ଆମ୍ବୁଳ ଝୋଳି, ଖଟା, ତେନ୍ତୁଳିଖଟା, ଓଉ ଖଟା ଆଦିର ବିଭିନ୍ନ ପ୍ରକାର ଆଚାର ବଡ଼ି, ଶାଗ, ପରିବା ଆଦିର ତରକାରୀର ବ୍ୟଞ୍ଜନ ପ୍ରସ୍ତୁତ କରାଯାଇଥାଏ ।



Digitized by PPRACHIN, SOA

ଅତିବେଶୀରେ ପିଆଜ, ଲଙ୍କା, ଲୁଣ ମାରି ପଖାଳ ଖାଇ ଦେଉଥିଲେ । ଅଧିକାଂଶ ପରିବାରରେ ଯାଉ ବି କରି ଖାଉଥିଲେ । ଏବେ ଖାଦ୍ୟର ପ୍ରସ୍ତୁତି ଓ ବ୍ୟବହାର ବଦଳି ଯାଇଛି । ସେ ସମୟରେ ପ୍ରତି ଘରେ ଜଳଖିଆ, ନିମିତ୍ତ ପୋଡ଼ପିଠା, ଏଣ୍ଡୁର, ଅଥାର ତଡ଼ାପିଠା, ଚକୁଳି, ମଣ୍ଡା, ଗଇଁଠାଗୁଡ଼ି, ଚିତଉ ଆଦି ବିଭିନ୍ନ ପ୍ରକାର ପିଠା କରାଯାଉଥିଲା । ଏବର ଝିଅ ବନ୍ଧୁମାନେ ସେ ସବୁ ଖାଦ୍ୟର ପ୍ରସ୍ତୁତି ଶିଖିନାହାନ୍ତି କି କରିପାରିବେ ନାହିଁ ।

ସେ ସମୟର ପଖାଳ ଭାତର ତୋରାଣୀ ମଣ୍ଡିରୁ ପ୍ରସ୍ତୁତ ଏକ କାଞ୍ଜି ଖାଇବାକୁ ଅତି ସୁସ୍ୱାଦ । ଦେହକୁ ଉପକାରୀ, ପେଟକୁ ଥଣ୍ଡା ହଜମ ଶକ୍ତି ବର୍ଦ୍ଧକ । ସେଥିପାଇଁ ସେ ତୋରାଣୀ କାଞ୍ଜି ଏବେ ଆଉ ଦେଖିବାକୁ ମିଳୁନାହିଁ । ଝିଅ, ବୋହୁମାନେ ଏବେ ତାହାର ପ୍ରସ୍ତୁତି ଜାଣନ୍ତି ନାହିଁ ।

***ପ୍ରସ୍ତୁତି ପ୍ରଣାଳୀ :-*** ପ୍ରତିଦିନ ପଖାଳ ହାଣ୍ଡିର ତଳି ତୁଳା ମଣ୍ଡ ତୋରାଣୀକୁ ଦୁଧ ବସା ପକାଇଲ ଭଳି ଏକ ପରିସ୍କାର ହାଣ୍ଡିରେ ୭/୮ ଦିନ ପକାଯାଏ । ପରେ ସେଥିରୁ ଉପର କାଣି କିଛି ଗଡ଼େଇ ଦେଇ ସେଥିରେ ବୋଇତାଳ, ପୋଇ ନାଡ଼ି, ମୂଳା, ବାଇଗଣ, ମାରିଷ ଖଡ଼ା ଆଦିରୁ ଯିଏଯାହା ପାଇଲା ପକେଇ ପରିମାଣ ମୁତାବକ ଲୁଣ ହଳଦୀ ଦେଇ ଗରମ ଚୁଲିରେ ଧିର ଜାଳରେ ଏକଓଳି ପର୍ଯ୍ୟନ୍ତ ବସାଯାଏ । ପରେ ତେଲ, ଫୁଟଣ, ରଶୁଣ ଲଙ୍କା ଆଦି ଦେଇ ବଘାରି ଆଣି ଥଣ୍ଡା କରି ଖାଇବାକୁ ଦିଆଯାଏ ।

## ଜୀବିକା :

ଭୂମିହୀନ ଲୋକମାନେଜୀବିକା ନିର୍ବାହ ଲାଗି ଅନ୍ୟର ଘରେ ମୂଲିଆ, ବାରମାସିଆ ରହିବା ଓ ମଜୁରୀ ଲାଗିବା ସେମାନଙ୍କ ପେଷା ଥିଲା । ଏହା ବ୍ୟତୀତ ଗାଈ, ମଇଁଷି, ଛେଳି, ମେଣ୍ଢା ଆଦି ପଶୁ ପାଳିବା ମଧ୍ୟ ସେମାନଙ୍କର ଜୀବିକା ଥିଲା । ସେ ସମୟରେ ସୋରରେ ଏତେ ଜନସଂଖ୍ୟା ନଥିଲା । ସବୁଆଡ଼େ ବଣ, ଜଙ୍ଗଲ ପୂର୍ଣ୍ଣ ଥିବାରୁ ପଶୁଙ୍କ ଲାଗି ଚାରଣ ଭୂମିର ଅଭାବ ନଥିଲା । ତେଣୁ ଏଠାକାର ଲୋକେ ସେ ସମୟରେ ଦୁଧ, ଦହି, ଘିଅ, ଛେନା ଆଦି ଦୁଗ୍ଧଜାତ ଜିନିଷର ଅଭାବ ଉପଲବ୍ଧି କରିପାରିନଥିଲେ । ପ୍ରତି ଘରେ



Digitized by PPRACHIN, SOA

ଭରପୁର ଥିଲା । ଏବେ ଗାଁ ଗହଳିରେ ଗୋରୁ ଛେଳି ଆଦି ପଶୁଙ୍କ ସମ୍ଭାର ଦେଖିବାକୁ ମିଳୁନାହିଁ । ସେ ସମୟରେ ଗାଁ ମାନଙ୍କରେ ଆଜିକାଲି ଟିୟୁବ୍‌ୱେଲ୍ କିମ୍ବା ନଳକୂଅ, ପାଇପ ପାଣିର ବ୍ୟବସ୍ଥା ନଥିଲା । ଗାଁ ମୁଣ୍ଡରେ ଗୋଟିଏ ଲେଖାଏଁ ପୋଖରୀ, ଗାଁ ମଝିରେ ପାଣି ଲାଗି ଚୁଆ, ପରେ କୂଅ କରାଗଲା । କେତେକ ସ୍ଥାନରେ ମଧ୍ୟ ବାନ୍ଧ କରାଯାଇଥିଲା । ଗାଁ ଲୋକେ ପିଇବା ପାଇଁ କୂଅର ପାଣି ବ୍ୟବହାର କରୁଥିଲେ । ଗାଁର ଝିଅ ବୋହୂମାନେ ଗାଧୋଇବାକୁ ପୋଖରୀକୁ ଯାଉଥିଲେ । ଘରେ ବ୍ୟବହାର ହେଉଥିବା ଆବଶ୍ୟକ ପାଣି ଆଣିବା ପାଇଁ କାଖରେ କଳସୀ, ଗରା, ହାତରେ ବାଲ୍‌ତି ଆଦି ନେଇଯାଉଥିଲେ । ସଞ୍ଜ ପୂର୍ବରୁ ଗୋଧୂଳି ସମୟରେ ମଧ୍ୟରାତିରୁ ବ୍ୟବହାର ଲାଗି ପାଣି ଆଣିବାକୁ ଓ ଗୋଡ଼ହାତ ଧୋଇବାକୁ ଯାଉଥିଲେ । ସେ ସମୟରେ ପ୍ରତି ପୋଖରୀରେ ସ୍ତ୍ରୀ ଲୋକଙ୍କ ଲାଗି ଅଲଗା ଓ ପୁରୁଷ ଲୋକଙ୍କ ଲାଗି ଅଲଗା ଘାଟ ଥିଲା ।

ଗାଁର ପୁରୁଷ ଲୋକମାନେ ସପ୍ତାହକୁ ଥରେ କିମ୍ବା ଦୁଇଥର କରି ନିକଟତମ ହାଟକୁ ସଉଦା ଲାଗି ଯାଉଥିଲେ । ସମସ୍ତେ ପ୍ରାୟ ଗୋଟିଏ ସପ୍ତାହ ଲାଗି ଆବଶ୍ୟକ ସଉଦା ଆଣୁଥିଲେ । ଲୁଣ, ତେଲ, ଶୁଖୁଆ, ପିଆଜ, ରଶୁଣ ଆବଶ୍ୟକ ଲୁଗା, ଗାମୁଛା, ପଖିଆ, ଝୁମ୍ପି, ପାଛିଆ, ଡାଲି, ଖାଜି, ହାଣ୍ଡି, ସ୍ତ୍ରୀ ଲୋକ ମାନଙ୍କର ଆବଶ୍ୟକ ଉପକାରଣମାନ ସେ ସମୟରେ ମୁଖ୍ୟ ହାଟ ସଉଦା ଥିଲା ।

ଯେଉଁ ବର୍ଷ ନିୟମିତ ବର୍ଷା ନହୁଏ ବା ବିଳମ୍ବରେ ହୁଏ କିମ୍ବା ମରୁଡ଼ି, ଦୁର୍ଭିକ୍ଷ ଆଦି ପଡ଼ିବାର ସମ୍ଭାବନା ହୁଏ, ସେ ସମୟରେ ଲୋକଙ୍କ ବିଶ୍ୱାସ ଅନୁଯାୟୀ ମହାଦେବଙ୍କୁ ଗାଁର ଲୋକମାନେ ଏକାଠି ହୋଇ ବୁଡ଼ାଇବା (ଜଳାଭିଷେକ) ସାଙ୍ଗକୁ ପୂଜା ଅର୍ଚ୍ଚନା କରୁଥିଲେ କିମ୍ବା ଗ୍ରାମଦେବୀଙ୍କ ପାଖଷର ମାନଣା କରୁଥିଲେ । ଲୋକଙ୍କ ବିଶ୍ୱାସ ଅନୁଯାୟୀ ପୂଜା ସରିଲାପରେ ବର୍ଷା ହେଉଥିଲା । କେବେ କେବେ ମଧ୍ୟ ସ୍ଥାନୀୟ ଦେବଗିରିରେ ଥିବା ମୁଣ୍ଡୁଳିଶୁଣୀକୁ ପୂଜା କରିବାକୁ ଯାଉଥିଲେ । ସେଠାରେ ପୂଜା ସରିଲା ପରେ ମା'ଙ୍କ ଦାସୀ କହିବା ଅନୁଯାୟୀ ବର୍ଷା ହେଉଥିଲା ।



Digitized by PPRACHIN, SOA

ଅକ୍ଳାନ୍ତ ପରିଶ୍ରମ ପରେ ନିଜ ନିଜ କର୍ମକ୍ଷେତ୍ରରୁ ଫେରି ଗାଁ ଲୋକମାନେ ପଖାଳ ପାଣି କିମ୍ବା, ଭୁଜା, ଚୁଡ଼ା, ପିଠା ଆଦି ଜଳଖିଆ କରି ପ୍ରତି ସନ୍ଧ୍ୟାରେ ଗାଁରେ ଥିବା ହରିହାଟ କିମ୍ବା ଭାଗବତ ଟୁଙ୍ଗୀରେ ଏକାଠି ହୋଇ ଆଧ୍ୟାତ୍ମିକ କାର୍ଯ୍ୟକ୍ରମ ଯଥା :- ଭାଗବତ, ରାମାୟଣ, ମହାଭାରତ ଆଦି ଶାସ୍ତ୍ର ପାଠ ଓ ଚର୍ଚ୍ଚାରେ ଭାଗ ନେଉଥିଲେ । ଆଧ୍ୟାତ୍ମିକ ଚର୍ଚ୍ଚା ଶେଷକୁ ଗାଁର ବିଭିନ୍ନ ସମସ୍ୟା ଉପରେ ଆଲୋଚନା କରାଯାଉଥିଲା । ଗ୍ରାମବାସୀଙ୍କ ମଧ୍ୟରେ ପରସ୍ପର ଭିତରେ ଆତ୍ମୀୟତା, ଆଦର, ସ୍ନେହ,ସହାନୁଭୂତି ଆଦି ଥିଲା । ଲୋକେ ଅତି ସରଳ ବିଶ୍ୱାସୀ ଥିଲେ । ଗାଁର ଅତିଥି ଅଭ୍ୟାଗତଙ୍କ ଲାଗି ଭାଗବତ ଟୁଙ୍ଗୀ ବା ହରିହାଟ ଘରକୁ ସାମୟିକ ଲାଗି ଧର୍ମଶାଳା ବାଡାକବଙ୍ଗଳାରୂପେ ବ୍ୟବହାର କରାଯାଉଥିଲା । ସେହିଠାରେ ମଧ୍ୟ ଗାଁର ବାଦବିବାଦ ନିଷ୍ପତି ଲାଗି ପଞ୍ଚୁଆତି ବୈଠକ ହେଉଥିଲା । ସେ ସମୟରେ ଆଜିକାଲି ଭଳି କୋର୍ଟ କଚେରୀରେ ମାମଲା ନଥିଲା । ସ୍ୱାସ୍ଥ୍ୟ ରକ୍ଷା ତଥା ସଙ୍ଗୀତ, ମନୋରଞ୍ଜନ କାର୍ଯ୍ୟକ୍ରମ ଆଦି ମଧ୍ୟ ସେହିଠାରେ କରାଯାଉଥିଲା ।

ମନୋରଞ୍ଜନ ପାଇଁ ସେ ସମୟରେ ଚଢ଼ିଆନାଟ, ପାଲା, ଦାଶକାଠିଆ, ଚୈତି ଘୋଡ଼ାନାଚ, ଯାତ୍ରା, ମୋଗଲ ତାମସା ଆଦି କରାଯାଉଥିଲା ।

ସେ ସମୟରେ ଗାଁ ଗଣ୍ଡାର ରାସ୍ତାଘାଟ ଆଜି ପରି ଉନ୍ନତମାନର ନଥିଲା । ରାସ୍ତାଘାଟ ଥିଲା ବାଲି ଗୋହିରୀ, ଦୁଇପାର୍ଶ୍ୱରେ ଥିଲା କେଉଁଠି କିଆବୁଦା ବା ବଣ, କେଉଁଠି କାନକୋଳି, ବଇଁଚ କୋଳି, ଖିରକୋଳି ଆଦି ବହୁ ବୁଦୁବୁଦିକା ଅନ୍ୟଗଛପୂର୍ଣ୍ଣ । କେଉଁଠି ବି ଆମ୍ବ, ଜାମକୋଳି, ବରକୋଳି ଆଦି ମାଳ । ସ୍ଥାନେ ସ୍ଥାନେ ମଧ୍ୟ ନିଛାଟିଆ, ଗଛଶୂନ୍ୟ, କେତେକ ସ୍ଥାନରେ ବର, ଅଶ୍ୱତ୍ଥ କିମ୍ବା ବର ଭଳି ଅର୍ଥକାରୀ ବେଲ ଗଛ ଭଳି ବଡ଼ ଗଛ ଥିଲା । ପଥଚାରୀ ଗଛର ଛାଇରେ ବିଶ୍ରାମ ନେଇ ପଥଚଲା ଥକ୍କା ମାରି ପାରୁଥିଲେ । କୋଳି, ଆମ୍ବ ଆଦି ଫଳ ଖାଇ ନିଜର କ୍ଷୁଧା ଦୂର କରି ପାରୁଥିଲେ । ପଥଶ୍ରମ କଣ ଜାଣିପାରୁନଥିଲେ । ସେ ସମୟରେ ସାଇକେଲ,



Digitized by PPRACHIN, SOA

ଗାଡ଼ିର ନାମ ଗନ୍ଧ ନଥିଲା । ଯାନବାହନ ରୂପେ ଗାଁ ଗଣ୍ଡାରେ ଥିଲା ଶଗଡ଼ଗାଡ଼ି, ବଡ଼ଲୋକଙ୍କ ନବା ଆଣିବା ପାଇଁ ସବାରୀ, ସବାରୀ ଗାଡ଼ି ଓ ଘୋଡ଼ାଗାଡ଼ି ବ୍ୟବହାର କରାଯାଉଥିଲା ।

ଲୋକଙ୍କ ପରିଧାନ ଲାଗି ତନ୍ତବୁଣା ଗାମୁଛା ପ୍ରଧାନ ଥିଲା । ବଡ଼ଲୋକଙ୍କ ପାଇଁ ତନ୍ତବୁଣା ଧୋତି, ସ୍ତ୍ରୀଲୋକଙ୍କ ପାଇଁ ତନ୍ତବୁଣା ଶାଢ଼ୀ । ସେ ସବୁ ପୁଣି ଆଠ, ନଅ ହାତି । ରାଜା ମହାରାଜାଙ୍କ ପାଇଁ ପାଟ, ମଠା ଆଦି ଥିଲା । ଖରାବର୍ଷାରୁ ରକ୍ଷା ପାଇବା ପାଇଁ ଆଜି ଭଳି ଛତା ନଥିଲା । ଥିଲା ତାଳବରଡ଼ା ଛତା, ପଖିଆ, ବଉଡ଼ା ଅଢ଼େଣି, ଝାମ୍ପ । ବଡ଼ଲୋକଙ୍କଠାରୁ ଗରିବଲୋକଙ୍କ ପର୍ଯ୍ୟନ୍ତ ଯିଏ ଯୁଆଡ଼େ ଯାଉଥିଲେ ହାତରେ ବାଡ଼ିଖଣ୍ଡିଏ ରହୁଥିଲା । ତେଣୁ ପ୍ରବାଦ ଥିଲା 'ହାତେ ଧରିଥିବୁ ବାଡ଼ି ଖଣ୍ଡେ, ଯାଉଥିବୁ ରାଜଦାଣ୍ଡେ'। ସେ ସମୟରେ ଆଜିକାଲି ଭଳି ଯୋତା ବା ଚପଲ ନଥିଲା । ଥିଲା ଖଡ଼ମ୍ ବା କଠଉ । ସେଗୁଡ଼ିକ ସାଧାରଣତଃ କାଠରେ ତିଆରି ହେଉଥିଲା । ଗରିବ ଲୋକମାନେ ତାଳ ଘୋଡ଼ା ଚଟୁଆରେ ଚପଲ କରି ପିନ୍ଧୁଥିଲେ । ଯାହାକି ଆଜିକାଲି ଦୁଃଷ୍ପ୍ରାପ୍ୟ ।- ସେ ସମୟରେ ସ୍ତ୍ରୀଲୋକମାନେ ବଳା, ବାଙ୍କି, ବଟଫଳ, ପାଉଁଜି, ଖଡ଼ୁ, ଅଣ୍ଟାରେ ଗୋଠ, ଚନ୍ଦ୍ରହାର, ତାଡ଼, ପାଦପଦ୍ମ, ରଗଡ଼ା, ଝୁମୁକା, ନଥ, ଗୁଣା, ଚମ୍ପା କଢ଼ି, ମଲ୍ଲି କଢ଼ି, ଚାପସରି, ନୁକି, ଆଦି ନାନା ପ୍ରକାର ଅଳଙ୍କାର ବ୍ୟବହାର କରୁଥିଲେ । କଣ୍ଠିମାଳି, ପୋହଳା, ମୋତିମାଳ ମଧ୍ୟ ସେ ସମୟରେ ବ୍ୟବହାର କରୁଥିଲେ । ସେ ସମୟରେ ଲୋକମାନେ କାଠ କଲମ ଓ ପର କଲମରେ ଲେଖୁଥିଲେ । ଲାଉପତ୍ର ରସ ଓ କଳାରେ କାଳି ତିଆରି କରୁଥିଲେ । ସେ ସମୟରେ ଆଜିକାଲି ଭଳି କିରୋସିନ୍‌ର ପ୍ରଚାର ନଥିଲା । ଲୋକେ କରଞ୍ଜ ମଞ୍ଜି, ନିମ ମଞ୍ଜି ଆଦିକୁ ଘଣାରେ ପେଡ଼ି ତେଲ ବାହାର କରି ବର୍ଷକ ପାଇଁ ରଖିବା ସହିତ ଦୀପରେ ସଳିତା ଦେଇ ଜାଳୁଥିଲେ । ଅଭାବେ ଯାହାଜି ଫଳର ମଞ୍ଜିକୁ କାଠିରେ ଗୁନ୍ଥି ମହମବତୀ ସଦୃଶ ଜାଳୁଥିଲେ । ଦିନ ରାତି ନିଆଁକୁ ଜଗାଇ ରଖୁଥିଲେ । ସେ ସମୟରେ ସନ୍ଧ୍ୟାପରେ ରାତିରେ ଗାଁ ଗହଳୀରେ ଡିବିରି ଆଲୁଅ, ଲଣ୍ଠନରେ ଝଲକ ଆଲୁଅ ଏବେ ଆଉ ଦେଖିବାକୁ ମିଳୁନାହିଁ ।



Digitized by PPRACHIN, SOA

ସେ ସମୟରେ ଝିଅବୋହୂମାନେ ଗାଧୋଇ ଯିବା ସମୟରେ ତେଲ ହଳଦୀ ଲଗାଇବା, ସେମାନଙ୍କର ଲାଜକୁଳା ସରଳା ମୁହଁ, ଓଢ଼ଣୀ ଟଣା ଲୁଗା ପିନ୍ଧା ପ୍ରତିଦିନ ସନ୍ଧ୍ୟା ପୂର୍ବରୁ ପିଲାମାନଙ୍କୁ ହଳଦୀ ତେଲ ମାରିଦେବା, ଆଜିର ଏ ପାଶ୍ଚାତ୍ୟ ସଭ୍ୟତା ପ୍ରଚଳିତ ସମାଜରେ ଦେଖିବାକୁ ମିଳୁନାହିଁ । ଏ ସବୁ ଥିଲା ସମାଜର ଏକ ପ୍ରକୃତିଗତ ଚିତ୍ର । ଆଜିର ସ୍ନୋ, ପାଉଡର, ସାବୁନ୍ ଓ ବାସନାତେଲ ସମାଜର ସେ ପ୍ରକୃତିର ଚିତ୍ରକୁ ନଷ୍ଟ କରିଦେଲା ।

ଏବେ ଲୋକମାନେ ବୃତ୍ତିଗତ କୌଳିକ କାମଧନ୍ଦା ଛାଡ଼ି ବସିଲେଣି । ଏଣିକି ପେଟ ପୋଷ ନାହିଁ ଦୋଷ ନୀତିରେ ଯିଏ କେହି ଯେ କୌଣସି ବୃତ୍ତିକୁ ଆଦରି ନେଇ ପାରୁଛି । ଏ ହେଉଛି ସମୟର ପରିବର୍ତ୍ତନ । ବର୍ତ୍ତମାନ ସମୟର ଚଳଣୀ ।

ସେ ସମୟରେ ଏ ଅଞ୍ଚଳରେ ବଡ଼ ବଡ଼ ଗୁଣିଆମାନେ ଥିଲେ । ମଙ୍ଗଳପୁର ପାଖରେ ଶଶୀକାନ୍ତ (ଶଶିଆ) ନାମରେ ଜଣେ ବଡ଼ ଗୁଣିଆ ଥିଲେ । ସେ ବହୁରୂପା ହୋଇପାରୁଥିଲେ । ଯଥାପାଇଟା ବାଘ, ଭାଲୁ, ମାଙ୍କଡ଼ ଆଦି ରୂପ ନେଇପାରୁଥିଲେ । ବଞ୍ଜୁଳା ଗଛକୁ ରାତା ରାତ ଶହ ଶହ ମାଇଲକୁ ଚଲାଇ ଦେଇ ପାରୁଥିଲେ । ତାଙ୍କର ଜଣେ ଭଉଣୀ ଥିଲେ । ସେ ବି ଜଣେ ବଡ଼ ଗୁଣିଆ ଥିଲେ । ଭୟାସାହି, ଗୋସେଇଁ ବଜାର (ଏବର ମୋବାରକପୁର)କୁ ବାହାହୋଇ ଆସିଥିଲେ । ସେ ଜାତିରେ ରାଢ଼ୀ ଥିଲେ । ଏଣୁ ତାଙ୍କୁ ଲୋକେ ରାଢ଼ିଆଣୀ ବୋଲି ଡାକୁଥିଲେ । ରାତିରେ କୌଣସି ଗୁଣିଆ ଏକକଇମ ଗଛ ଉଡ଼ାଇ ନେଉଥିବା ସମୟରେ ସେ ବଡ଼ି ଜାଣିପାରି ଜଳନ୍ତା ଚୁଲିରେ ନିଜ ଗୋଡ଼ ଦୁଇଟିକୁ ଭରିଦେଇ ଗଛଟିକୁ ଅଟକାଇବା ସହିତ ଚୁଡ଼ା ହୁଡୁମ ଭାଜୁଥିଲେ । ଗଛଟି ଉତ୍ତର ପାର୍ଶ୍ୱ ମଠ ସାମନାକୁ ଥିଲା । ଏ ଲେଖକ ମଧ୍ୟ ସେ ଗଛଟିକୁ ପିଲା ଦିନେ ଦେଖିଛନ୍ତି । କାଶିଆ ମହାନ୍ତି ନାମରେ ଅନ୍ୟ ଜଣେ ବଡ଼ ଗୁଣିଆ ଥିଲେ । ସେ ଅଷ୍ଟ ବେତାଳ ସାଧିଥିଲେ । ଯେତେବେଳେ ଯାହା ଚାହୁଁଥିଲେ ଯେତେ ଦୂରରେ ହେଉ ପଛେ ବେତାଳଙ୍କୁ ପଠାଇ ସେ ଜିନିଷ ଖାଦ୍ୟ ଆଦିନେଇ ଆସିପାରୁଥିଲେ । ଗୁଣିଗାରିଡ଼ି ଶିଖିବା ସେ ସମୟରେ ସମାଜରେ ପ୍ରଚଳନ ଥିଲା ।



Digitized by PPRACHIN, SOA

### ବିବାହ -

ସାମାଜିକ ଚଳଣୀରେ ବିବାହ ପ୍ରଥା ଏକ ମୁଖ୍ୟ ପ୍ରସଙ୍ଗ । ସେ ସମୟରେ ପୁଅଙ୍କ ଅପେକ୍ଷା ଝିଅଙ୍କ ସଂଖ୍ୟା କମ୍ ଥିଲା । ଏଣୁ ବିବାହଘର ସମୟରେ କନ୍ୟା ସୁନା (ଟଙ୍କା ବିନିମୟରେ କନ୍ୟା କିଣା) ପ୍ରଥା ଥିଲା । ଯିଏ ଟଙ୍କାଦେଇ ଝିଅ କିଣି ପାରୁଥିଲା ସିଏ ବିବାହ ଦେଉଥିଲେ । ଏପରିକି ଥିଲାବାଲା , ବଡ଼ଲୋକ, ଧନୀ, ପାରିଲାବାଲା ଶ୍ରେଣୀର ଲୋକମାନେ ଏକାଧିକ ଅର୍ଥାତ୍ ୪/୫ ଟିରୁ ଅଧିକ ସ୍ତ୍ରୀ ବି ବିବାହ କରୁଥିଲେ । ସେ ସମୟରେ ମନୋରଞ୍ଜନ ଲାଗି ଆଜିକାଲି ଭଳି ସିନେମା, ଥିଏଟର, ଯାତ୍ରା ଆଦିର ପ୍ରଚଳନ ଏତେ ନଥିଲା । ସ୍ତ୍ରୀ ଲୋକମାନଙ୍କ ସହି ସହବାସ କରିବା ବା ହସଖୁସି ହେବା ଏକମାତ୍ର ପ୍ରଥା ଥିଲା । କେତେ ଲୋକ ବି ନିଜର ଚାଷବାସ ଓ ବ୍ୟବସାୟ ବାଣିଜ୍ୟ ଆଦି ବଢ଼ାଇବା ଲାଗି ନିଜର ବିଶ୍ୱସ୍ତ ଲୋକ ରଖିବା ସହିତ ଜନ୍ମଦେଇ କୁଟୁମ୍ବ ବଢ଼ାଇବା ଉଦ୍ଦେଶ୍ୟରେ ଏକାଧିକ ବିବାହ କରୁଥିଲେ । କନ୍ୟା ଅଭାବରୁ ଲୋକେ ମେଦିନପୁରର ବରହବପୁର କିମ୍ବା ସମ୍ବଲପୁର,ଛତିଶଗଡ଼ରୁ କନ୍ୟା ଆଣି ବିବାହ କରୁଥିଲେ । ସେ ସମୟରେ ବାଲ୍ୟବିବାହ ପ୍ରଚଳନ ଥିଲା । ଏଣୁ କଥାରେ ଥିଲା ଝିଅ ଦଶାକୁ ବର ତିରିଶା । ଅର୍ଥାତ୍ ଦଶବର୍ଷର ଝିଅକୁ ମଧ ତିରିଶ ବର୍ଷର ବର ବାହା ଦେଉଥିଲେ । କନ୍ୟା ଘର ଉପଯୋଗୀ ହେଲେ ଶ୍ୱଶୁର ଘରକୁ ଯାଉଥିଲା ।

ସୋଠର ସାମାଜିକ ଚଳଣୀରୁ ଏବେ ଢିଙ୍କି, ରାତିରୁ ସ୍ତ୍ରୀ ଲୋକମାନେ ଉଠି ଧାନ, ଚୁନା ଆଦି କୁଟିବା , ଧାନ ଉଁସେଇବା କାଠ ତିଆରି ଖୁଆରେ ଦହି ବୁଲାଇବା, ଶିଳ ଶିଳପୁହା, ପେସା, ହେମଦସ୍ତା, ଆଦିର ବ୍ୟବହାର ଓ ସଭ୍ୟତା ଆଜିକାଲି ହଜିଗଲାଣି । ଏ ସବୁର ପରିବର୍ତ୍ତେ ଘରେ ଘରେ ଗ୍ରାଇଣ୍ଡର ଓ ଗାଁ ଗଣ୍ଡାରେ ଧାନକଳର ସଭ୍ୟତା ଗଢ଼ି ଉଠିଲାଣି ।

### ବିଚାର ବ୍ୟବସ୍ଥା :

ସେ ସମୟରେ ରାଜା ସିଧାସଳଖ ଲୋକଙ୍କୁ କୌଣସି ନ୍ୟାୟ ଦେଉନଥିଲେ । ନ୍ୟାୟ ଦେବାଲାଗି ଦୁଇଜଣଙ୍କୁ ନିଯୁକ୍ତି ଦେଉଥିଲେ । ସାଧାରଣ


Digitized by PPRACHIN, SOA

ଲୋକମାନଙ୍କର ଯେ କୌଣସି ବାଦବିବାଦକୁ ନେଇ ସେମାନଙ୍କଠାରୁ ନ୍ୟାୟ ଦେଉଥିଲେ । ସେମାନଙ୍କ ନ୍ୟାୟରେ ଯଦି କୌଣସି **ପକ୍ଷ** ଅସନ୍ତୋଷ ହୁଏ, ତେବେ ତାଙ୍କ (ରାଜା)ଙ୍କ କାନକୁ ଯାଉଥିଲା ଓ ସେ **ହସ୍ତକ୍ଷେପ** କରୁଥିଲେ ।

***ସ୍ୱାସ୍ଥ୍ୟ :***

ସୋରର ଲୋକଙ୍କ ସ୍ୱାସ୍ଥ୍ୟବ୍ୟବସ୍ଥା ପାଇଁ ମୋବାରକପୁରରେ ଶ୍ରୀ ବନ୍ଧଭାରତୀ ନାମରେ ଜଣେ ବଡ଼ ବୈଦ୍ୟ ଥିଲେ । ତାଙ୍କ ପାଖରେ କବିରାଜିପଦ୍ଧତିରେ ଚିକିତ୍ସା କଲାଗି କେତେକ ବଡ଼ ମୂଲ୍ୟବାନ ପୁସ୍ତକ ଥିଲା । ଅଡ଼ଙ୍ଗବଜାରସ୍ଥ ମୋତିଲାଲ ଗୁପ୍ତା ମଧ୍ୟ ଜଣେ ନାମାଜାଦା କବିରାଜ ଥିଲେ । ତାଙ୍କ ପାଖରେ ବହୁ ରୋଗ ପାଇଁ ହିନ୍ଦୀଭାଷାର ଅନେକ ଚିକିତ୍ସା ପଦ୍ଧତି ପୁସ୍ତକ ଥିଲା । ଏତଦ୍ ବ୍ୟତୀତ ସାମ୍ପ୍ରଦାୟିକ ଦଙ୍ଗା ସମୟରେ ଢାକାସ୍ଥ ନୂଆଖାଲିରୁ କଲିକତାକୁ ପଳାଇ ଆସିଥିବା ବସନ୍ତ ଚାନ୍ଦଙ୍କ ପୁଅ କବିରାଜ ସତୀଶ ଚାନ୍ଦ ସୋରର ତୁଣ୍ଡପଡ଼ା ଗ୍ରାମରେ ରହୁଛନ୍ତି । ତାଙ୍କ ପାଖରେ ମଧ୍ୟ ବହୁରୋଗ ପାଇଁ ବଙ୍ଗଳା ଭାଷାର ଏକ ଔଷଧ ତିଆରି ପୁସ୍ତକ ଥିଲା । ଏମାନେ ସମସ୍ତେବିଭିନ୍ନ ପ୍ରକାର ରୋଗ ପାଇଁ ନିଜେ ଔଷଧ ତିଆରି କରୁଥିଲେ ।

***ଚାଟଶାଳୀ, ଆଖଡ଼ାଘର, ନୃତ୍ୟକଳାକେନ୍ଦ୍ର :***

ସେ ସମୟରେ ପାଠ ଚାଟଶାଳୀରେ ପଢ଼ାଯାଉଥିଲା ଗଛମୂଳେ, ଛାଇ ତଳେ, ଖୋଲା ମଇଦାନରେ । ମାଟିଖଡ଼ି, ସିଲଟ ପରେ ତାଳପତ୍ର ଓ ଲେଖନୀ ବ୍ୟବହାର କଲେ । ପରେ ଆସିଲା କାଠି କଲମ ଓ ପର କଲମ । ହାଣ୍ଡିକଳା ଓ ନାଉପତ୍ର ରସରେ ତିଆରି କାଳୀ, ଘରେ ମଧ୍ୟ ଲୋକେ କାଳି ତିଆରି କରିଦେଇ ପାରୁଥିଲେ । ସେ ସମୟରେ ଚାଟଶାଳୀ ଅବଧାନ ମାନଙ୍କର ନିଯୁକ୍ତି କି ବେତନ ନଥିଲା । ଶିଷ୍ୟମାନେ ପାଳିକରି ପ୍ରତିଦିନ ଚାଉଳ, ପରିବା ଜଳଖିଆ ଓ ଅନ୍ୟାନ୍ୟ ଦ୍ରବ୍ୟ ଆଣି ଦେଉଥିଲେ । ସେଇଥିରେ ଅବଧାନ ନିଜ ପରିବାର ଚଳାଉଥିଲେ ।

ସେ ସମୟରେ ଶିକ୍ଷାଗତ ପ୍ରମାଣପତ୍ର ବା ସାର୍ଟିଫିକେଟ କିଛି ନଥିଲା । ପିଲା ଲେଖି ପଢ଼ି ଜାଣିଲେ, ଭାଗବତ, ମହାଭାରତ, ରାମାୟଣ



Digitized by PPRACHIN, SOA

ପଢ଼ିପାରିଲେ, ରାଜା, ବାଦଶାହା, ଜମିଦାର ଆଦିଙ୍କ ପାଖରେ ଗୁମାସ୍ତା ଚାକିରୀ ମିଳିଯାଇ ପାରୁଥିଲା । ଏହା ବ୍ୟତୀତ ସେ ସମୟରେ ସୋରର ନୃତ୍ୟ କଳା ଓ ସାମରିକ ଆଖଡ଼ାକଳାର ଏକ ସ୍ୱାତନ୍ତ୍ରୀୟତା ଥିଲା । ଯାହାକି ପରବର୍ତ୍ତୀ କାଳରେ ଦୀର୍ଘ ଶହ ବର୍ଷର ପରାଧିନତାର ତାଡ଼ନା, ରାଜ ଅନୁଦାନର ଅଭାବ, ଲୋକଙ୍କ ମଧ୍ୟରେ ଦୁଃଖ ଦୈନତାର କଷଣ, ପରିବାରର ଜୀବନ ଜୀବିକା ଲାଗି ଭିନ୍ନ ବୃତ୍ତିକୁ ଆଦରିନେବା ଏବଂ ପରବର୍ତ୍ତୀ ସମୟରେ ସାମରିକ କ୍ଷେତ୍ରରେ ଅତ୍ୟାଧୁନିକ ଆଗ୍ନେୟାସ୍ତ୍ର ବ୍ୟବହାର ଯୋଗୁଁ ସେ ସବୁ ଧିରେ ଧିରେ ଲୋପ ହୋଇଯାଇଛି । ଏସବୁ ଉପରେ ଗବେଷଣା କରାଯାଇ ପୁନରୁଦ୍ଧାର କରାଯିବା ଉଚିତ୍ ।

### ପୁରୁବାଇ କନ୍ୟାଶ୍ରମ :

ଗାନ୍ଧି ସେବାଶ୍ରମ ସଂଘ ଓ୍ୱାର୍ଦ୍ଧାର ଆର୍ଥିକ ସହାୟତାରେ ଜଣେ ଗୁଜୁରାଟୀ ମହିଳା ପୁରୁବାଇ ବେନ୍‌ଙ୍କ ଦ୍ୱାରା ୧୯୩୦ ମସିହାରେ ୨୫/୩୦ ଜଣ ପିଲାଙ୍କୁ ନେଇ ସୋରରେ ଅନାଥ ପିଲାଙ୍କ ଲାଗି ଏକ କନ୍ୟାଶ୍ରମ ସ୍ଥାପତିତ ହୋଇଥିଲା । ପୁରୁବାଇଙ୍କ ମୃତ୍ୟୁ ପରେ ୧୯୭୦-୭୧ ରେ ଏକ ପ୍ରସ୍ତାବରେ ପୁରୁବାଇ କନ୍ୟାଶ୍ରମ କରାଯାଇ ଗାନ୍ଧି, ଓଡ଼ିଶା ବାଳାଶ୍ରମ ଭଦ୍ରକର କରିଚାଳକ ଶ୍ରୀ କପିଳ ଦାସଙ୍କ ଦାୟିତ୍ୱରେ ରହିଲା । ଏବେ କପିଳ ଦାସଙ୍କ ମୃତ୍ୟୁ ପରେ ତାଙ୍କ ପୁତ୍ର ଜବାହାର ଦାସ ଦାୟିତ୍ୱରେ ଅଛନ୍ତି । ଉକ୍ତ ଆଶ୍ରମ ଅଧିନରେ ପୁରୁବାଇ କନ୍ୟା ପ୍ରାଇମେରୀ ସ୍କୁଲ, ଗାନ୍ଧି ସେବାସଂଘ, ମାଇନର ସ୍କୁଲ, ଗାନ୍ଧି ସେବା ସଂଘ ବାଳିକା ହାଇସ୍କୁଲ ନାମରେ ତିନୋଟି ସ୍କୁଲ ଚାଲିଛି । ବହୁ ନିସହାୟ, ଗରିବ, ଅନାଥ ପିଲା ଉପକୃତ ହେଉଛନ୍ତି ।

### ଡକାୟତି :

ଭାରତର ଚମ୍ବଲ ଉପତ୍ୟକାରେ ଡକାୟତି ହେଲା ଭଳି ଅତୀତରେ ସୋରରେ ପଥଚାରୀଙ୍କଠାରୁ ମଧ୍ୟ କେତେକ ସ୍ଥାନରେ ଡକାୟତି କରାଯାଉଥିଲା । ବିଶେଷ କରି ଦୂରଦୂରାନ୍ତରୁ ସୋର ବଜାରକୁ ବ୍ୟବସାୟ କରିବା ଉଦ୍ଦେଶ୍ୟରେ ଶଗଡ଼ରେ ମାଲ ଆଣୁଥିବା ସମୟରେ କିମ୍ବା ବଜାରରୁ ସଉଦା ନେଇ ଫେରୁଥିବା ସମୟରେ ରାସ୍ତାରେ ଡକାୟତଙ୍କ ସମ୍ମୁଖୀନ ହେଉଥିଲେ । ସେ



Digitized by PPRACHIN, SOA

ସ୍ଥାନଗୁଡ଼ିକ ହେଲା, ଅନନ୍ତପୁର ରାସ୍ତାରେ କୁଆମରା, ଜଗନ୍ନାଥ ସଡ଼କରେ ଛପୁଲିଆ, ତୁଡ଼ିଗଡ଼ିଆ ରାସ୍ତାରେ ପିତାକାଳିଆ ଓ କେଶପୁର ପରେ ସାଜନପୁର ମଧ୍ୟରେ ଚଡ଼କମରା ଆଦି ସ୍ଥାନ । ଏହି ସ୍ଥାନ ମାନଙ୍କରେ ପଥିକମାନେ ପହଞ୍ଚିଲେ ଭୟରେ ସେମାନଙ୍କ ହୃଦକମ୍ପ ହେଉଥିଲା ଓ ଇଷ୍ଟଦେବଙ୍କୁ ସ୍ମରଣ କରୁଥିଲେ । ଏହି ସବୁ ଅଞ୍ଚଳ ସେ ସମୟରେ ବଡ଼ବଡ଼ ଗଛରେ ଘଞ୍ଚ ଜଙ୍ଗଲରେ ପରିପୂର୍ଣ୍ଣ ଥିଲା । ହେଟାବାଘ, ଭାଲୁ , ବରାହ, ଚିତା, ହାତୀ, ଆଦି ହିଂସ୍ରଜାତିର ଜନ୍ତୁ ତଥା ଅଜଗର ଭଳି ବଡ଼ ବଡ଼ ସର୍ପଙ୍କ ଦ୍ୱାରା ପରିପୂର୍ଣ୍ଣ ଥିଲା ।

***ପର୍ବପର୍ବାଣୀ :***

ପୂର୍ବେ ସୋରବାସୀ ବିଭିନ୍ନ ପ୍ରକାର ପର୍ବପର୍ବାଣୀ ପାଳନ କରୁଥିଲେ । ସେଥିମଧ୍ୟରୁ - ବୈଶାଖ ସଂକ୍ରାନ୍ତି ବା ଛତୁଆଖିଆ ସଂକ୍ରାନ୍ତି, ଅକ୍ଷୟ ତୃତୀୟା, ଜ୍ୟେଷ୍ଠ ଶେଷ ଦିନ ଓ ଆଷାଢ଼ ମାସର ପ୍ରଥମ ଦ୍ୱିତୀୟ ଦିନକୁ ରଜପର୍ବ, ରଥଯାତ୍ରା, ଗହ୍ମା ପର୍ବ, ରାକ୍ଷୀ ବନ୍ଧନ, ଝୁଲଣ ଯାତ, ସୁନିଆଁ, ପିତୃପୁରୁଷଙ୍କୁ ଶ୍ରାଦ୍ଧ, ଦୁର୍ଗାପୂଜା, ଗର୍ଭଣା ସଂକ୍ରାନ୍ତି, ବୋଇତ ବନ୍ଦାଣ, ଛାଡ଼ଖାଇ ପୂର୍ଣ୍ଣୀମା, ମାଣବସା, ପ୍ରଥମାଷ୍ଟମୀ, ପୌଷମାସରେ ଧନୁ ସଂକ୍ରାନ୍ତି, ମାଘମାସରେ ମକର ସଂକ୍ରାନ୍ତି, ଦୋଳ ପୂର୍ଣ୍ଣୀମା, ଶିବରାତ୍ରୀ ବା ଜାଗର, କେଉଟ ପୂର୍ଣ୍ଣୀମା ଆଦି ବାରମାସର ତେର ପର୍ବ ପାଳନ କରୁଥିଲେ ।

***ବୈଶାଖ ସଂକ୍ରାନ୍ତି ବା ଛତୁଆଖିଆ ପଣା ସଂକ୍ରାନ୍ତି :***

ଏହି ସଂକ୍ରାନ୍ତିରେ ପିତୃପୁରୁଷଙ୍କ ପିଣ୍ଡି, ତୁଳସୀ ଚଉରା, ବରଅସ୍ତ ଗଛ ଆଦି ମୂଳରେ ଗୁଟି ଟାଙ୍ଗି ଛତୁଆ ଭୋଗ,ପଣା ଆଦି ଦେଇଥାନ୍ତି । ଅଧିକାଂଶ ଗାଁରେ ଗ୍ରାମଦେବୀଙ୍କ ପାଖରେ ଉଡ଼ାଯାତ୍ରା, ନିଆଁପାଟ, ଝୁଣାପାଟ,ନିଶାପାଟ ଆଦି ହୋଇଥାଏ । ବିଶେଷକରି ଦାଣ୍ଡ ଖେଡ଼ାଇଙ୍କ ପାଖରେ ଉଡ଼ାଯାତ୍ରା ହୋଇଥାଏ । ଜ୍ୟେଷ୍ଠମାସରେ ଅକ୍ଷୟ ତୃତୀୟା ପଡ଼ିଥାଏ । ଚାଷୀମାନେ ଏହି ଦିନ ସକାଳୁ ଗାଧୋଇ ଶୁଦ୍ଧ ବସ୍ତ୍ର ପିନ୍ଧି ଧାନ ବିହନ ବିଲରେ ବୁଣି ଅନୁକୂଳ କରିଥାନ୍ତି । ପ୍ରତ୍ୟେକ ଚାଷୀ ପରିବାରରେ ଏହା ଏକ ପର୍ବ ।



Digitized by PPRACHIN, SOA

ଜ୍ୟେଷ୍ଠମାସ ଶେଷ ଦିନ ମାସନ୍ତ ଓ ଆଷାଢ଼ ସଂକ୍ରାନ୍ତ ଓ ତା' ପରଦିନ ତିନିଦିନ ଧରି ରଜପର୍ବ ପାଳନ କରାଯାଏ । ଚାଷୀ ସମସ୍ତଙ୍କର ବିଲ ବୁଣା ପ୍ରାୟ ସରିଯାଇଥାଏ । ଏହିଦିନକୁ ବେଶ ଧୂମଧାମର ସହିତ ଘରେ ଘରେ ନାନା ପ୍ରକାର ପିଠାପଣା କରି ସୁସ୍ୱାଦୁ ତରକାରୀ କରି ଅତିଥି, ଅଭ୍ୟାଗତଙ୍କୁ ନିମନ୍ତ୍ରଣ କରି ଖାଇବାକୁ ଦେଇଥାନ୍ତି । ନିଜେ ମଧ୍ୟ ବନ୍ଧୁବାନ୍ଧବଙ୍କ ଘରକୁ ବୁଲିବାକୁ ଯାଇଥାନ୍ତି । ଗାଁର ଟୋକାମାନେ ଗାଁ ମଝିରେ ଡେଙ୍ଗୁରା ବସାଇ ବାଗୁଡ଼ି ଆଦି ଖେଳିଥାନ୍ତି । ବୟସ୍କ ଲୋକମାନେ ତାସ ପଶା ପାଲି ଖେଳରେ ବ୍ୟସ୍ତ ରହନ୍ତି । ଝିଅମାନେ ପଡ଼ୋଶୀ ସାଙ୍ଗସାଥୀଙ୍କ ଘର ବୁଲିବାରେ ବ୍ୟସ୍ତ ରହିବା ସାଙ୍ଗକୁ ଲଡୁ, ଚେସ୍ ଆଦି ଖେଳରେ ମାତିଥାନ୍ତି । ଏହି ସମୟକୁ ଅଧିକାଂଶ ଗାଁରେ ଠାକୁରାଣୀଙ୍କ ପାଖରେ ପାଟୁଆ ଉଡ଼ାଯାତ୍ରା ହୁଏ । ବିଶେଷ କରି ପାଇକସାହି ବାରପଡ଼ା ନାୟିକାଣୀ ପାଖରେ ଓ ଅନ୍ୟଠି ମଧ୍ୟ ହୋଇଥାଏ ।

ଆଷାଢ଼ ମାସରେ ମଧ୍ୟ ରଥଯାତ୍ରା ପଡ଼ିଥାଏ । ସୋରବାସୀ ଏହାକୁ ଧୂମଧାମରେ ପାଳନ କରିଥାନ୍ତି ।

ଶ୍ରାବଣରେ ଚିତାଲାଗି ଅମାବାସ୍ୟା ପଡ଼ିଥାଏ । ସୋରବାସୀ ପ୍ରାୟ ସମସ୍ତେ ଚାଷୀଶ୍ରେଣୀୟ ହୋଇଥିବାରୁ ଏହିଦିନ ତାଳରେ ଚିତଉପିଠା କିମ୍ବା ବିରିରେ ଚିତଉ ପିଠା କରି ଗେଣ୍ଡାପୂଜା କରି ସେମାନଙ୍କ ପରିବାରରେ କାହାରିକୁ ପାଣିରେ କାମ କରୁଥିବା ସମୟରେ ଗେଣ୍ଡା ନକାଟିବାକୁ ପ୍ରାର୍ଥନା କରିଥାନ୍ତି । ଭାଦ୍ରବ ମାସରେ ଗହ୍ମାପର୍ବ ବା ବଳଦେବଙ୍କ ଜନ୍ମଦିନ ବା ରାକ୍ଷୀପୂର୍ଣ୍ଣିମା ଦିବସ ପଡ଼େ । ଏହି ଦିବସଟିକୁ ମଧ୍ୟ ଉତ୍ସାହରସହିତ ପାଳନ କରାଯାଏ । ଏହି ଦିନ ପୁରୋହିତମାନେ ନିଜ ନିଜ ଜେଜମାନ ଘରେ ରାକ୍ଷୀ, ପଇତା ଦେଇଥାନ୍ତି । ଚାଷୀମାନେ ମଧ୍ୟ ନିଜ ଗୋରୁଙ୍କ ସିଙ୍ଗରେରାକ୍ଷୀବାନ୍ଧି, ପିଠା, ଘାସ ଖାଇବାକୁ ଦେଇଥାନ୍ତି । ଏହାକୁ ଗୋରୁପୂଜନ କୁହାଯାଏ । ଚାଷୀମାନେ ଏହି ଦିନରେ ଚାଷ କରିଥିବା ଜମିରେ ଅଢ଼େଇ ଆଣ୍ଠୁ ବାଛିବାର ବିଧି ଅଛି । ଏହି ଦିନକୁ ଓପଡ଼ା ହୋଇଥିବା ବିହନକୁ ବା ତଳିକୁ ବାସି ରଖିବାର ପ୍ରଥା ନାହିଁ । ଭଉଣୀମାନେ ମଧ୍ୟ ଭାଇମାନଙ୍କ ହାତରେ ରାକ୍ଷୀ ବାନ୍ଧିଥାନ୍ତି । ଅନ୍ୟ



Digitized by PPRACHIN, SOA

ଅଞ୍ଚଳ ଭଳି ଏଠାରେ ମଧ୍ୟ ମନ୍ଦିର ମାନଙ୍କରେ ଝୁଲଣ ଯାତ କରାଯାଇଥାଏ । ଏହା ମଧ୍ୟ ଏ ଅଞ୍ଚଳର ଏକ ବିଶିଷ୍ଟ ପର୍ବ । ଏ ଅଞ୍ଚଳରେ ସୁନିଆଁକୁ ଭଲଭାବରେ ପାଳନ କରାଯାଉଥିଲା । ପ୍ରଜାମାନେ ନିଜ ଚାଷବାଡ଼ିରୁ ଉତ୍ପନ୍ନ ଫଳ, ଫସଲକୁ ରାଜା, ଜମିଦାରମାନଙ୍କୁ ଭେଟି ଆକାରରେ ଦେଇ ପ୍ରତିବଦଳରେ ବକ୍‌ସିସ୍ ନେଇଥାନ୍ତି ।

ତର୍ପଣ ଆରମ୍ଭ ପକ୍ଷରେ ପିତୃପୁରୁଷଙ୍କୁ ଶ୍ରାଦ୍ଧ ଦେଇଥାନ୍ତି । ସେଥିନିମିତ୍ତ ଘରକୁ ଅତ ପବିତ୍ର ଭାବରେ ଲିପାପୋଛା କରି ଅତିଥିମାନଙ୍କୁ ଖାଇବାକୁ ଦେଇଥାନ୍ତି । ଦୁର୍ଗାପୂଜାକୁ କେତେକ ଦେବୀ ମନ୍ଦିରରେ ପୂଜା, ପାଠ, ହୋମ ଆଦି କରାଯାଉଥିଲା । ଏବର ଯୁଗରେ ତାହା ସାର୍ବଜନୀନ ବିଭିନ୍ନ ଅଞ୍ଚଳରେ ମେଢ଼ କରି ପୂଜା କରାଯାଉଛି । ଆଧ୍ୟାତ୍ମୀୟତାକୁ ଛାଡ଼ି ଚାକଚକ୍ୟ ଉପରେ ଅଧିକ ଗୁରୁତ୍ୱ ଦିଆଯାଉଛି । ଏହା ଛଡ଼ା ତପୋଇ ବା ଖୁଦୁରୁକୁଣୀ ଓଷା ମଧ୍ୟ ପାଳନ କରାଯାଏ ।

ଅକ୍ଷୟତୃତୀୟା, ଗହ୍ମା ପୂର୍ଣ୍ଣୀମା ଭଳି ଗର୍ଭଣା ସଂକ୍ରାନ୍ତି ମଧ୍ୟ ଚାଷୀ ମାନଙ୍କର ଏକ ପର୍ବ । ପ୍ରତିବର୍ଷ କାର୍ତ୍ତିକ ସଂକ୍ରାନ୍ତିରେ ଲୋକମାନେ ଚାଷ କରିଥିବା ଧାନ କ୍ଷେତରେ, ଗର୍ଭବତୀକୁ ସଦ ଖାଇବାକୁ ଦେବାଭଳି ଖଡ଼ା ମାରି ସଦ ବା ଭୋଗ ଦେଇଆସି ହୃଷ୍ଟପୁଷ୍ଟ ଭାବରେ ଫଳିବା ଲାଗି ପ୍ରାର୍ଥନା କରିଆସିଥାନ୍ତି ଓ ଘରେ ବିରିଡାଲି, କଳମ ଶାଗ, ଭାଜି ଆଦି ଭଲ ବ୍ୟଞ୍ଜନ ପ୍ରସ୍ତୁତ କରାଇ ନିଜେ ଖାଇଥାନ୍ତି ।

ବୋଇତ ବନ୍ଦାଣରେ ଭେଳା ଭସା,ଛାଡ଼ଖାଇ ପୂର୍ଣ୍ଣୀମା ଏ ଅଞ୍ଚଳରେ ଏକ ପ୍ରଧାନ ପର୍ବ । ଲୋକମାନେ ମାସ ସାରା ନିରାମିଶ ଖାଇ ପୂର୍ଣ୍ଣୀମା ଦିନ ଭେଳା ଦେଇ ଛାଡ଼ଖାଇ ସମାପ୍ତ କରାଇ,କୀର୍ତ୍ତନ ଦଳ ନେଇ ବିଭିନ୍ନ ଦେବଦେବୀ ମନ୍ଦିରକୁ ଦର୍ଶନାର୍ଥେ ଯାଇଥାନ୍ତି । କେତେକ ମନ୍ଦିରରେ ମଧ୍ୟ କୀର୍ତ୍ତନ ଦଳ ତଥା ଦର୍ଶକଙ୍କୁ ଭୁରିଭୋଜନର ବ୍ୟବସ୍ଥା ଥାଏ ।

ମାର୍ଗଶୀର ମାସରେ ମାଣବସା ଏ ଅଞ୍ଚଳର ଚାଷୀମାନଙ୍କର ଘରେ ଏକ ବଡ଼ ପର୍ବ । ପ୍ରତି ପରିବାର ନିଜ ନିଜ ଘରକୁ ଅତି ପବିତ୍ର ଭାବରେ ଲିପା



Digitized by PPRACHIN, SOA

ପୋଛା କରି ଗୁରୁବାରରେ ମାଣ ବସାଇ, ସେଥିରେ ନୂଆ ଧାନ ଓ ପେଣ୍ଡା ଦେଇ ଲକ୍ଷ୍ମୀଙ୍କର ପୂଜା ଆରାଧନା କରିଥାନ୍ତି । ପିଠା, ପଣା, ଖିରୀ, ଚିଡଉ, ଦହିକଡ଼ି ଆଦି କରି ଭୋଗ ଲଗାଇ ସମ୍ପତ୍ତି ଓ ଧନର ଦେବୀ ମା' ଲକ୍ଷ୍ମୀଙ୍କୁ ଆହ୍ୱାନ କରିଥାନ୍ତି । ପ୍ରତି ଘରେ ଲକ୍ଷ୍ମୀଙ୍କର ଆବିର୍ଭାବର ଭାବନା ନେଇ ସମସ୍ତେ ଆନନ୍ଦରେ ବିଭୋର ଥାନ୍ତି ।

ପ୍ରଥମାଷ୍ଟମୀ ମଧ୍ୟ ଏ ଅଞ୍ଚଳର ଏକ ମୁଖ୍ୟ ପର୍ବ । ଏହିଦିନ ପ୍ରତ୍ୟେକ ପରିବାର ସେମାନଙ୍କର ପ୍ରଥମ ସନ୍ତାନକୁ ନୂଆ ଲୁଗା ପିନ୍ଧେଇବା ସହିତ ଶୀତ ଋତୁ ଆସିଯାଉଥିବାରୁ ଯେଉଁମାନଙ୍କର ଲୁଗା ଚାଦର ଆଦି ନଥାଏ, ସେମାନଙ୍କ ଲାଗି ମଧ୍ୟ ଲୁଗା କରାଯାଇଥାଏ ।

ପୌଷ ମାସ ସଂକ୍ରାନ୍ତିକୁ ଧନୁ ସଂକ୍ରାନ୍ତି ବୋଲି କହିଥାନ୍ତି । ଏହିଦିନ ଉଖୁଡ଼ାର ମୁଆଁ କରି ଠାକୁରଙ୍କ ପାଖରେ ଭୋଗ ଲଗାଇବା ସହିତ ସମସ୍ତଙ୍କ ଘରେ ତିଆରି କରି ଖାଇଥାନ୍ତି । ନହେଲେ ଗୁଡ଼ିଆଙ୍କ ପାଖରୁ କିଣି ନେଇଥାନ୍ତି ।

ମାଘ ମାସ ସଂକ୍ରାନ୍ତିକୁ ମକର ବା ତିଳଉ ସଂକ୍ରାନ୍ତି ବୋଲି କହିଥାନ୍ତି । ଏ ବେଳକୁ ଲୋକଙ୍କର ଧାନ କଟା ପ୍ରାୟ ସରିଯାଇଥାଏ ।ତେଣୁ ଲୋକେ ଏହି ସଂକ୍ରାନ୍ତିକୁ ଅତି ଆନନ୍ଦ ଉତ୍ସାହର ସହିତ ପାଳନ କରିଥାନ୍ତି । ଏହିଦିନ ପୁରୋହିତମାନେ ପ୍ରତି ଯେଜମାନଙ୍କଘରେ ମକର ପାଣି ଦେଇଥାନ୍ତି । ଲୋକେ ଚୁଡ଼ା, ଖଜା ଖାଇ ପୂର୍ତ୍ତୀରେ ବନ୍ଧୁବାନ୍ଧବ, ସାଇପଡ଼ିଶା ବୁଲି ଯାଆନ୍ତି । ଏହିଦିନ ଲୋକେ ଏତେ ଖୁସି ଥାନ୍ତି ଯେ ମୁସଲମାନ ଭାଇମାନେ କଥା ପ୍ରସଙ୍ଗରେ କହିପକାନ୍ତି " ଇଦ୍, ବକିର୍, ସୁବରାଦ୍, ଉସ୍କୁ ଲାତ ମାରଥଦିଆ ଏକ ମକର ସଂକ୍ରାନ୍ତ । ଏହିଦିନ ମୁନିଯାତ ହୋଇଥାଏ । ଏ ଅଞ୍ଚଳ ସୋରରେ ଓଡ଼ିଶା ପ୍ରସିଦ୍ଧ ବାଳଙ୍ଗ ମୁନିକୁ ଓଡ଼ିଶାର ବିଭିନ୍ନ ପ୍ରାନ୍ତରୁ ବ୍ୟବସାୟୀମାନେ ବ୍ୟବସାୟ କରିବା ଲାଗି ଆସୁଥିଲେ । ଦୀର୍ଘ ୧୫ ଦିନ ଧରି ମୁନି ଯାତ୍ରା ଲାଗୁଥିଲା । ବ୍ୟବସାୟୀମାନେ ଦ୍ୱିପଇସା ଭଲ କାରବାର କରୁଥିଲେ । ଏ ଅଞ୍ଚଳର ଚାଷୀମାନେ ସେମାନଙ୍କର ବର୍ଷକ ପାଇଁ ଓ ପୁଅ, ଝିଅ ଆଦି



Digitized by PPRACHIN, SOA

ବାହାଘର କାମକାର୍ଯ୍ୟ ପାଇଁ ଆବଶ୍ୟକ ସଉଦା ଏହି ମୁନି ଯାତ୍ରାରୁ କରୁଥିଲେ । ଏବେ ସେ ମୁନି ଯାତ ନାହିଁ । ନାମକୁ ମାତ୍ର ଅଛି ।

ଦୋଳ ପୂର୍ଣ୍ଣୀମା ବେଳକୁ ଧାନ ଅମଳ ପ୍ରାୟ ସରିଯାଇଥାଏ । ସମସ୍ତେ ମନ ଉଲ୍ଲାସରେ ଥାନ୍ତି । ସମସ୍ତେ ମେଳଣ ପଡ଼ିଆକୁ ଠାକୁର ବିମାନ ନେଇ କିମ୍ୱା ସାଙ୍ଗରେ ଯାଇ, ନହେଲେ ମେଳଣ ଦେଖିବାକୁ ଯାଇ ରଙ୍ଗ, ଅଭିରରେ ମନଭରି ଖେଳିଥାନ୍ତି । ସୋରରେ ପତରାଜପୁର ମେଳଣ ଡାକୁଆ ମେଳଣ ଥିଲା ଓ ଅଟେ ମଧ୍ୟ ।

ଶିବରାତ୍ରୀ ବା ଜାଗର ଯାତ୍ରା ଆସେ ହୋରି ପରେ । ଏହା ସୋରବାସୀଙ୍କର ଏକ ବିଶିଷ୍ଟ ପର୍ବ । ରାତିସାରା ଶିବ ମନ୍ଦିର ପାଖରେ କୀର୍ତ୍ତନ, ଭଜନ ଆଦି କରାଇ ରାତି ତମାମ ଅନିଦ୍ରା ବା ଉଜାଗର ରହି ବ୍ରତ ପାଳନ କରିଥାନ୍ତି ।

ସୋରକୁ ପୁରାଣ ବର୍ଣ୍ଣିତ ମତ୍ସ୍ୟ ରାଜ୍ୟ କୁହାଯାଏ । ଏ ଅଞ୍ଚଳର ନଈ ପାଖରେ, ସମୁଦ୍ର କୂଳରେ ବହୁ ସଂଖ୍ୟାରେ କେଉଟ, ଗୁଖା ଜାତିର ଲୋକ ଅଛନ୍ତି । ସେମାନେ କେଉଟ ପୂର୍ଣ୍ଣୀମାକୁ ଅତି ଯାକଜମକରେ ପାଳନ କରିଥାନ୍ତି । ଏଥିରେ ନାବ ବା ନୌକା ପୂଜା, ଘୋଡ଼ାନାଚ ଆଦି କରିଥାନ୍ତି । ଏହି ପରି ସୋରବାସୀ ବାରମାସରେ ତେର ପର୍ବ ଅତି ଆନନ୍ଦ ଉଲ୍ଲାସ ମଧ୍ୟରେ ପାଳନ କରିଥାନ୍ତି ।

### ସୋରର ବାଣିଜ୍ୟ ବ୍ୟବସାୟ :

ସେ ସମୟରେ ସୋରରେ ମୁଖ୍ୟ ବ୍ୟବସାୟ ବା ବାଣିଜ୍ୟ କେନ୍ଦ୍ର ଥିଲା ଗୋସେଇଁ ବଜାର, ବାମ୍ଫିଛକ ଏବର ମୋବାରକପୁର ହାଇସ୍କୁଲ ଛକ ଓ ଅଡ଼ଙ୍ଗ ବଜାର । ଏଠରେ ଏଠାକାର ଉତ୍ପାଦିତ ଅର୍ଥକାରୀ ଫସଲ ଧାନ, ଚାଉଳ ଓ ଲୁଣର ବ୍ୟବସାୟ ପୀଠମାନ ଥିଲା, ଗୋରୁ, ଛେଳି ଆଦି ପଶୁଙ୍କ ପାଇଁ ମଧ୍ୟ ହାଟ ଥିଲା । ସାଧାରଣ ଲୋକମାନେ ନିଜ ନିଜର ଉତ୍ପାଦିତ ଜିନିଷମାନ ବିକ୍ରୟ କରି କିମ୍ୱା ବଦଳ କରିବା ଲାଗି ବହୁଦୂର ଦୂରାନ୍ତରୁ ଏପରିକି ଆଗରପଡ଼ା, ବନ୍ତ, କୁପାରୀ, ଅଡ଼ା, ଉଙ୍ଗୁରା, ସରଶଙ୍ଗ,



Digitized by PPRACHIN, SOA

ସିମୁଳିଆ, ବେତଡ଼ା, ବାସୁଦେବପୁର, ବାଲିଖଣ୍ଡ ଆଦିରୁ ସେ ସମୟରେ ଆସୁଥିଲେ । ସେମାନେ ଦୁଇଦିନ ଆଗରୁ ନିଜ ନିଜ ପଣ୍ୟଦ୍ରବ୍ୟ ଶଗଡ଼ ଗାଡ଼ିରେ କିମ୍ବା ବଳଦ ପିଠିରେ ଲଦି, ଚୁଡ଼ା, ଚାଉଳ, ରୋଷେଇ ସରଞ୍ଜାମ ଧରି ଘରୁ ବାହାରି ଡକାୟତ, ଚୋର, ତସ୍କରଙ୍କ ଭୟରେ ଦଳବଦ୍ଧ ହୋଇ ଚାଲି ଚାଲି ଆସୁଥିଲେ । ବାଟରେ ପାଖରୀ, ପାଣିର ସୁବିଧା ଦେଖି ପଦା କିମ୍ବା ପୋଖରୀ ଆଡ଼ିରେ ଥିବା ବଡ଼ ବଡ଼ ଗଛ ମୂଳେ ଛାଇ ସ୍ଥାନ ଦେଖି ଅଟକି ବାଟଚଲା ଥକ୍କା ମାରିବାସହିତ ରୋଷେଇ କରି କିମ୍ବା ଚୁଡ଼ା, ଭୁଜା ଆଦି ଜଳଖିଆ ଖାଇ, ଗୋରୁମାନଙ୍କୁ ଖୁଆଇ ପୁଣି ବାଟ ଚାଲୁଥିଲେ । ତତ୍‌କାଳୀନ ବ୍ୟବସାୟ ପେଣ୍ଠରେ ପହଞ୍ଚି ନିଜ ନିଜର ବାଣିଜ୍ୟ ବ୍ୟବସାୟ କରିବା ପାଇଁ ଆଣିଥିବା ପଣ୍ୟଦ୍ରବ୍ୟତକ କିଣାବିକା କରୁଥିଲେ କିମ୍ବା ବଦଳ କରାଉଥିଲେ ।

ବ୍ୟବସାୟ ପୀଠ ମାନଙ୍କରେ ଆଜିର ବଜାରରେ ମିଳୁଥିବା ତେଲଭାଜି, ଛେନା ଜିନିଷ ଭଳି ସେ ସମୟରେ ମିଳୁନଥିଲା । ସେ ସମୟରେ ଧାନ ଚାଉଳରୁ ତିଆରି ଖଇ, ଉଖୁଡ଼ା, ଚୁଡ଼ା, ହୁଡୁମ, ମୁଆଁ, ମୁଢ଼ି, ଚଣା, ବୁଟଭଜା ବା ସିଝା ବାଦାମ ଭଜା, ବିରିପିଠା, ଚିଉପିଠା, ପୋଡ଼ାପିଠା, ଅଥାରପିଠା, ଚକୁଳି, ପାଣି ମଣ୍ଡା, ଗଇଁଠାଗୁଡ଼ି ଆଦି ସାଙ୍ଗକୁ ଗୁଡ଼ କିମ୍ବା ବୁଇଡି କଖାରୁ, ନାଉ, ପୋଇଖଡ଼ା, ଖମ୍ବଆଳୁ, କଦଳୀ ଆଦିର ତରକାରୀ ବା ବିରି, ଖେସାରି ଡାଲିର ଡାଲମା, ଏ ସବୁ ଥିଲା ସେ ସମୟର ବଡ଼ ଜଳଖିଆ । ତେଣୁ କରି ଗୋସେଇଁ ବଜାର ବାମ୍ପି ଛକଠାରେ ରାଢ଼ୀ, ନିଆରୀ, ଗୁଡ଼ିଆ ଆଦିଙ୍କ ଘର ଦେଖିବାକୁ ମିଳେ । ସେ ସମୟରେ ସେମାନଙ୍କ ପୂର୍ବପୁରୁଷ ବ୍ୟବସାୟ ଲାଗି ଏଠାରେ ଘର କରିଥିଲେ ।

ଦୂର ଦୂରାନ୍ତରୁ ଆସୁଥିବା ଲୋକମାନେ ସାଙ୍ଗରେ ଆଣିଥିବା ଶଗଡ଼, ବଳଦ ଆଦିକୁ ଏଠାରେ ପଦାରେ ଥିବା ବଡ଼ ବଡ଼ ବର, ଅଶ୍ୱତ୍ଥ ଗଛ ମୂଳରେ ବାନ୍ଧି ଆବଶ୍ୟକ ଜଳଖିଆ କରି ସଉଦାମାନ ନେଇ ରୋଷେଇ କରିବା ସହିତ ଖିଆପିଆ କରି ଥକା ନେଉଥିଲେ । ସେମାନଙ୍କ ଲାଗି ଜଳର ସୁବିଧା ନିମିତ୍ତ ଲଠାରେ ଏକ ବଡ଼ ବାମ୍ପୀ ଥିଲା । ଏଣୁ ଏହାକୁ ବାମ୍ପୀ ଛକ

ବୋଲି କୁହାଯାଉଥିଲା । ଏଠାରେ ମୁଖ୍ୟତଃ ଧାନ, ଚାଉଳ, ଲୁଣ, ଲୁଗା, ଗାମୁଛା, ଘର ଉପକରଣ ଜିନିଷମାନ ଯଥା, ଛାଳି, ଖାଳି, ବାଙ୍କି, ପଖିଆ, ପାଛିଆ, ହେଁଶ, ମଶିଣା, ତଟ୍ରା, ଝାମ୍ପି, ଶୁଖୁଆ ଟୋଳକରଞ୍ଜ, ନିମ୍ବ, ସୋରିଷତେଲ ଆଦି ବିକା କିଣା ହେଉଥିଲା । ଏ ସବୁ ସାମଗ୍ରୀର ବଡ଼ ବଡ଼ ଗୋଦାମ ବ୍ୟବସାୟୀମାନେ ଏଠାରେ କରିଥିଲେ ।

***ରପ୍ତାନି ଦ୍ରବ୍ୟ :***

ଏଠାରୁ ମୁଖ୍ୟତଃ ଧାନ, ଚାଉଳ, ଲୁଣ, ପଥର, ବାସନ, ପଥର ମୂର୍ତ୍ତି, ପଥରରେ ଘର ଉପକରଣ ଦ୍ରବ୍ୟ ଯଥା, ଚନ୍ଦନ ପେଡ଼ି, ଧୂପଦାନୀ, ଫୁଲଦାନୀ, ଦୀପ, ଲୁଣ କାଠୁଆ, ଆଦି, କାଇଁଚର ବିଭିନ୍ନ ପ୍ରକାର ଡଲା, ବିଞ୍ଚଣା ଆଦି ଘର କରଣା ଉପକରଣ, ବାଉଁଶରେ ତିଆରି ପାଛିଆ, ଡଲା, ବେତରେ ତିଆରି ବୁଝ, ପୁଡ଼ି, ସେର ଡଲା ଆଦି, ତାଳପତ୍ରରେ ତିଆରି ପଖିଆ, ଶିରରେ ତିଆରି ଛାଳି, ଖାଳି, ବାଙ୍କି, ଝାମ୍ପି ଆଦି ଘରକରଣା ଉପକରଣ ମାନ, ମାଛ, ଶୁଖୁଆ, ପଦ୍ମଫୁଲ ଆଦି ନିକଟସ୍ଥ ଅନ୍ୟ ରାଜ୍ୟ କିମ୍ବା କଲିକତା ଆଦିକୁ ପଠାଯାଉଥିଲା । ସେ ସମୟରେ କରଞ୍ଜ, ନିମ୍ବ, ଟୋଲ ଆଦି ତେଲର କାରବାର ଥିଲା । ଉକ୍ତ ତେଲ ବିଦେଶକୁ ମଧ୍ୟ ପଠାଯାଉଥିଲା । ସୋଲ ସୋଲଜାତ ଦ୍ରବ୍ୟ ମଧ୍ୟ ପଠାଯାଉଥିଲା ।

ରପ୍ତାନି ଦ୍ରବ୍ୟ ଗୋଡ଼ିକ ଲାଗି କଞ୍ଚାମାଲ ମିଳିବାରେ ସୋରରେ ଅଭାବ ନଥିଲା । ସୋରର ସୁବିସ୍ତିର୍ଣ୍ଣ ସମତଳ କ୍ଷେତ, ବଣ, ଜଙ୍ଗଲ, ପାହାଡ଼, ହୁଡ଼ି, ନଦୀ, ନାଳ, ପୋଖରୀ, ସମୁଦ୍ର ଆଦିରୁ ମିଳୁଥିଲା । ଏଠାକାର ଲୋକମାନେ ସବୁଆଡୁ ମଞ୍ଚମାଲ ସଂଗ୍ରହ କରି ତାହାର ବିନିଯୋଗରେ ଲାଗିପଡୁଥିଲେ ।

ଇଂରେଜମାନେ ଆସୀଗଲାପରେ କଲିକତାର ବିକାଶ ସାଙ୍ଗକୁ ରେଲ ରାସ୍ତା ନିର୍ମାଣ ପରେ ପରେ ସୋର ଅଞ୍ଚଳରେ ଥିବା ବଡ଼ ବଡ଼ ପୋଖରୀ ଆଦିରେ ପଦ୍ମଫୁଲ କରାଯାଉଥିଲା ଓ କଲିକତାର ଚାହିଦା ଅନୁଯାୟୀ ସେ ସମୟରେ କେବଳ ସୋରରୁ ପଦ୍ମଫୁଲ ପଠାଯାଉଥିଲା । କାଳକ୍ରମେ ଅନ୍ୟଆଡ଼େ ବିଶେଷ କରି କଲିକତାରେ ପଦ୍ମଫୁଲର ଉତ୍ପାଦନ ବଢ଼ିବା ସହିତ



Digitized by PPRACHIN, SOA

ବିଭିନ୍ନ କାରଣ ନେଇ ଏ ଅଞ୍ଚଳରେ ପଦ୍ମଫୁଲ ଚାଷ ଉପରେ ଚାହିଦା କମିଯିବାରୁ ଲୋକେ ବିତସ୍ପୃତ ହୋଇ ପଦ୍ମଫୁଲ ଚାଷ ଛାଡ଼ି ଦେଇ କଇଁ ଫୁଲ ବିଶେଷ କରି ନୀଳକଇଁ ଓ ରକ୍ତ କଇଁ ଆବଶ୍ୟକତା ଅନୁଯାୟୀ ଯୋଗାଉଥିଲେ । କଇଁଫୁଲ ଅପେକ୍ଷା କଇଁ ବେଣ୍ଟୁକାର ଚାହିଦା ଅଧିକ ଥିଲା । ତେଣୁ କଇଁ ବେଣ୍ଟୁକା ମଧ୍ୟ ପଠାଯାଉଥିଲା । ମେଣ୍ଟୁକାରେ ପ୍ରସ୍ତୁତ ହେଉଥିବା ଖଇରେ ଗୁଡ଼ ପାଗ ଦେଇ ଏକ ପ୍ରକାର ସୁସ୍ୱାଦୁ ମିଠାଇ କରାଯାଉଥିଲା । କିଲ ବି ବେଣ୍ଟୁକା ଖଇ ଖାଉଥିଲେ । ଏବେ ବି ବେଣ୍ଟୁକା ଖଇ ମିଠେଇ ଅଛି । ପିଲାମାନେ ଖାଇବାକୁ ଭଲ ପାଆନ୍ତି । ବେଣ୍ଟୁକା ଖଇର ଚାହିଦା ସେ ସମୟରେ ବହୁତ ଥିଲା । ପରବର୍ତ୍ତୀ କାଳରେ ବଡ଼ ବଡ଼ ପୋଖରୀ ଗୋଡ଼ିକରେ ମାଛ ଓ ଖରାଟିଆ ବୁହାଇ ଶୁଖାଇ, ପୋଇ, ବୋଇତାଳ, ଚଲଣା, କାକୁଡ଼ି, କଲରା ଆଦି ପରିବା ଚାଷ କରାଗଲା । ଏବେ ସେ ସବୁ ଚାଷରୁ ମଧ୍ୟ ଲୋକେ ନିବୃତ ହୋଇ ବସିଗଲେଣି ।

***ପରିବହନ :***

ବ୍ୟବସାୟ ନିମିତ୍ତ ମାଲ ପରିବହନ କରିବାଲାଗି ସେ ସମୟରେ ଆଜିକାଲି ଭଳି ବିଶେଷ ସୁବିଧା ନଥିଲା । ବିଶେଷ କରି ଶଗଡ଼ ଗାଡ଼ି, ବଳଦ, ଗଧ ପିଠିରେ ପଲାହାଣ ପାଣ୍ଡି ପକାଇ ନତୁବା ଭାର ବ୍ୟବହାର୍ କରି ମାଲ ପରିବହନ କରାଯାଉଥିଲା । ନଇ ପାଖରେ ନାଆ ଡଙ୍ଗା, ତାଳଡଙ୍ଗା ପାଲଟଣା ଡଙ୍ଗା ଆଦି ବ୍ୟବହାର କରାଯାଉଥିଲା । ଭାରବୁହାରେ ବଳଦ, ମଇଁଷି, ଗଧ ଆଦି ପଶୁଙ୍କୁ ବ୍ୟବହାର କରାଯାଉଥିଲା ।

***ଧର୍ମ :***

ମୋଗଲ ବ୍ରାଦଶାହା ଆକବରଙ୍କ ସେନାପତି ରାଜା ମାନସିଂହ ୧୫୯୦ରେ ଓଡ଼ିଶା ଆକ୍ରମଣ କରିବାପୂର୍ବରୁ ସୋରରେ ସମସ୍ତେ ହିନ୍ଦୁଧର୍ମାବଲମ୍ବୀ ଥିଲେ । ଯଥାବିଧିରେ ଦେବଦେବୀ ପୂଜା କରୁଥିଲେ । ସୋର ନଅର ଭିତରେ ଲିଙ୍ଗପଡ଼ାର କ୍ଷମେଶ୍ୱର ମନ୍ଦିର, ମୋବାରକପୁରରେ ବଟେଶ୍ୱର, ମା ଦ୍ୱାରିକା ବୁଢ଼ୀ, ପାଇକାସାହିରେ ମା' ବାରପଡ଼ା ନାୟିକାଣୀ,



Digitized by PPRACHIN, SOA

ଶିରାପୁରରେ ମା' ଦାଣ୍ଡଖେଡ଼ାଇ, ରାଇପୁରରେ କେତେକ ପୁରାତନ ମନ୍ଦିର । ଏହା ବ୍ୟତୀତ ରାଜ୍ୟରେ ଅନ୍ୟ କେତେକ ପୁରାତନ ମନ୍ଦିର ଥିଲା । ବଡ଼ପୋଖରୀର ଉତ୍ତରପଟ ଓ ଏବର ମହିଳା କଲେଜର ପଶ୍ଚିମପଟକୁ ଚଣ୍ଡୀ ମନ୍ଦିର ଥିଲା । ଯାହାର ବଗ୍ନାବଶେଷର ଏବେ ଏକ ବଡ଼ କାନ୍ଥ ଅଛି । ୧୫୯୦ ମସିହାରେ ମୋଗଲ ଆକ୍ରମଣ ସମୟରେ ସେ ମନ୍ଦିର ଧ୍ୱଂସ ପାଇଯାଇଥିଲା । ସେହି ସମୟରୁ ସୋରରେ କିଛି ଭାରତୀୟ ଧର୍ମାନ୍ତରିତ ମୁସଲମାନ ରହିଆସୁଥିଲେ । ମୋଗଲମାନଙ୍କର ତତ୍‌କାଳୀନ ଅତ୍ୟାଚାର ସହିନପାରି ଭୟ ଓ ଆତଙ୍କର ବଶବର୍ତ୍ତୀ ହୋଇ କିଛି ଲୋକ ମୁସଲମାନ ଧର୍ମ ବାଧ୍ୟବାଧକତାରେ ଗ୍ରହଣ କରିଥିଲେ । ପରିବର୍ତ୍ତିତ କାଳରେ ସେହି ମୁସଲମାନ ବଂଶ ବଢ଼ି ଓ ବାହାରୁ ଅନ୍ୟରାଜ୍ୟରୁ କିଛି ମୁସଲମାନ ଆସି ଏବେ ସୋରରେ ଉଭୟ ହିନ୍ଦୁ ଓ ମୁସଲମାନ ଧର୍ମର ଲୋକେ ଶାନ୍ତି, ସଦ୍‌ଭାବନାର ସହିତ ପରସ୍ପର ମଧ୍ୟରେ ଭାଇଚାରା ବଜାୟ ରଖି ବସବାସ କରି ଆସୁଛନ୍ତି । ହେଲେ ବି ଏଠାକାର ମୁସଲମାନ ମାନେ ହିନ୍ଦୁ ସଂସ୍କୃତିକୁ ପରୋକ୍ଷରେ ଏକପ୍ରକାର ଆଦରି ନେଇ ଏବେ ବିବାହଘରରେ ବାଣ ଫୁଟାଇବା, ବାଜା ବଜାଇବା ଦେଖାଗଲାଣି । କାର୍ତ୍ତିକ ପୂର୍ଣ୍ଣମାରେ ହିନ୍ଦୁଙ୍କ ଭେଳା ଭସାଭଳି ସେମାନଙ୍କର ଏକ ଶ୍ରାଦ୍ଧ ଦିବସରେ ସୋଲର ଭେଳା ଭସାଇ ବାଣ ମଧ୍ୟ ଫୁଟାଇଥାନ୍ତି । ହିନ୍ଦୁଙ୍କ କାର୍ତ୍ତିକ ସଂକ୍ରାନ୍ତିରେ ଘଡ଼ାମରା ଓ ମାର୍ଗଶୀର ମାରବାସାକୁ ମଧ୍ୟ ସେମାନଙ୍କ ମଧ୍ୟରୁ ଅଧିକାଂଶ ସେମାନଙ୍କ ଢଙ୍ଗରେ ପାଳନ କରିଥାନ୍ତି । ହିନ୍ଦୁମାନଙ୍କ ଦୁର୍ଗାପୂଜା, କାଳୀପୂଜା, ରାକ୍ଷୀବନ୍ଧନକୁ ସେମାନେ ସମ୍ମାନ ଦେବା ସହିତ ସେଦିନ ମୌଜ ମଜଲିସ୍ କରିଥାନ୍ତି । ଖ୍ରୀଷ୍ଟ ଧର୍ମାବଲମ୍ବୀ ଲୋକଙ୍କର କୌଣସି ଅନୁଷ୍ଠାନ ସୋରରେ ନଥିଲେ ମଧ୍ୟ କାଁ ଭାଁ କରି କେଉଁଠି କେମିତି ଜଣେ, ଦୁଇଜଣ ରହିଯାଇଛନ୍ତି ସିନା ସେମାନେ ଗଣାକୁ ନୁହନ୍ତି । ସୋରରେ ମଧ୍ୟ ସବୁ ଜାତିର ଲୋକ ଅଛନ୍ତି । ଯେହେତୁ ବିଭିନ୍ନତାକୁ ହିନ୍ଦୁତ୍ୱରେ ମାନ୍ୟତା ଦିଆଯାଇଛି । ଧର୍ମ ଦୃଷ୍ଟିକୋଣରୁ ମୁସଲମାନ ଓ ଖ୍ରୀଷ୍ଟିଆନମାନେ ହିନ୍ଦୁ ସ୍ଥାନରେ ହିନ୍ଦୁ ଅଟନ୍ତି । କେବଳ ବିଦେଶୀ ସଂସ୍କୃତି ଓ ଚାଲିଚଳଣକୁ ନେଇ ସେମାନେ ସୋର ତଥା ଭାରତରେ (ହିନ୍ଦୁସ୍ତାନ) ରେ ମୁସଲମାନ ଖ୍ରୀଷ୍ଟିଆନ ବୋଲି ପରିଚିତ ।



Digitized by PPRACHIN, SOA

### *ସେ ସମୟର ମୁଦ୍ରା :*

ପ୍ରଥମାବସ୍ଥାରେ ମୁଦ୍ରା ନଥିଲା । ସମସ୍ତ କାରବାର ଦ୍ରବ୍ୟକୁ ଦ୍ରବ୍ୟର ବଦଳରେ କାରବାର ଚାଲିଥିଲା । ପରେ ତମ୍ବା ପିସା, ଅଧୁଲି, ପାହୁଲା, ଛଦାବ ଓ କଉଡ଼ି ଆଦିର କାରବାର ହେଲା । ଇଂରେଜମାନେ ଆସିଲା ପରେ ଟଙ୍କା ଆଠଣି, ଚାରଣି, ଦୋଅଣି, ଅଣା, ପଇସାର କାରବାର ହେଲା ।

### *ସାହିତ୍ୟ :*

କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ, ବ୍ୟାସକବି ଫକୀରମୋହନ ସେନାପତି, ପଲ୍ଲିକବି ନନ୍ଦକିଶୋର ବଳ , ଗୀତି କବି ଦୀନକୃଷ୍ଣ, ପ୍ରକୃତି କବି ଗଙ୍ଗାଧର ମେହେର, ବିପ୍ଳବୀ କବି ରବି ସିଂ, କାନ୍ତକବି ଲକ୍ଷ୍ମୀକାନ୍ତଙ୍କ ପରି ଓଡ଼ିଆ ସାହିତ୍ୟ ଜଗତକୁ ସୋରର ଦାନ କମ ନୁହଁ କି ପଛରେ ପଡ଼ିନାହିଁ । କବିବର ରାଧାନାଥ ରାୟ, କେଶବ କବି କୃଷ୍ଣଚନ୍ଦ୍ର ବେହେରା, ବାବାଜି ପଦ୍ମଚରଣ ଦାସ ଓ ଲୋକକବି କୃପାସିନ୍ଧୁ ଆଚାର୍ଯ୍ୟଙ୍କ ଓଡ଼ିଆ ସାହିତ୍ୟ କ୍ଷେତ୍ରକୁ ଦାନ ଅତୁଳନୀୟ ଓ ସର୍ବଜନ ବିଦିତ । ଏବେ ବି ବହୁ ଛୋଟବଡ଼ ସାହିତ୍ୟିକ, ଲେଖକ, କବି ବିଭିନ୍ନ ନାମରେ ଯଥା ସାହିତ୍ୟ ଅନୁଷ୍ଠାନ ଗଠନ କରି ସାହିତ୍ୟ ସାଧନାରେ ରତ ରହିବା ସହିତ ଓଡ଼ିଆ ସାହିତ୍ୟ ଜଗତକୁ ସମୃଦ୍ଧି କରିବାରେ ବ୍ରତୀ ରହିଛନ୍ତି । ମୋଟାମୋଟି ଉପରେ କହିବାକୁ ଗଲେ ସୋର ସାହିତ୍ୟ ସାଧନାର ଏକ କ୍ଷେତ୍ର ।



## ସୋରମାଟିର ଗୌରବ ଓ ସୌରଭ

ପ୍ରକୃତି - ଶୋଭାମୟୀ । ସୁନ୍ଦରୀ । ସୁଶ୍ରୀ । ସୋର ଭୂମିର ଶୋଭା ଏସବୁର ମିଳନସ୍ଥଳୀ । ଏ ମାଟିର ରୂପପ୍ରାଣ କବି ରାଧାନାଥଙ୍କ ଚିନ୍ତା ଓ ଚେତନାରେ ସୋର ଗର୍ବ ଯାର କରଇ ପ୍ରଚାର - ପଶ୍ଚିମେ ପର୍ବତ ପୂର୍ବେ ପାରାବାର, ସୋରର ଯଥାର୍ଥ ପ୍ରକୃତିଚିତ୍ର । ପଶ୍ଚିମରେ ଦେବଗିରି - ନୀଳଗିରି, ସୋରରୁ ଚାହିଁଲେ ସୁନ୍ଦର ଦିଶେ - ବର୍ଷାରେ, ବସନ୍ତରେ । ପୂର୍ବରେ ଢିଳ ଢିଳ ନୀଳଜଳରାଶିରେ ପରିପୂର୍ଣ୍ଣ ବଙ୍ଗୋପସାଗର ସୋରର ସୌନ୍ଦର୍ଯ୍ୟକୁ ମହିମାନ୍ୱିତ



Digitized by PPRACHIN, SOA

କରେ । ପ୍ରାଣମୟ କରେ । ବନ୍ୟସମ୍ପଦ ପରିପୂର୍ଣ୍ଣ ଦେବଗିରି ଓ ନୀଳଗିରି ଏବଂ ମତ୍ସ୍ୟ ସମ୍ପଦ ପରିପୂର୍ଣ୍ଣ ବଙ୍ଗୋପସାଗର ମଝିରେ ଶସ୍ୟଶ୍ୟାମଳ ବିସ୍ତିର୍ଣ୍ଣ କ୍ଷେତ୍ର ସୋର ଭୂମି, ବୀରତ୍ୱର ଗୌରବରେ, ଦେବଦେବୀଙ୍କ ମହିମାରେ, କବି-କୃଷକ-ରାଜନିତୀଜ୍ଞ ଓ ଅଭିନେତାଙ୍କ ଅବଦାନରେ ମହିମାମଣ୍ଡିତ । ପଶୁପକ୍ଷୀଙ୍କ ସମାବେଶରେ ମୁଖରିତ ଏ ଭୂମି ପଥିକର ପ୍ରିୟସ୍ଥଳୀ । ଜଗନ୍ନାଥ ସଡ଼କ, ରେଳପଥ ଏହି ସ୍ଥାନଟିକୁ ନାନା ସାଧୁସନ୍ଥଙ୍କୁ ଏଠାକୁ ଆଣିବାରେ ସହାୟକ ହୋଇଅଛି । ନାନାଧର୍ମଧାରାର ପ୍ରଚାର ଓ ପ୍ରସାରରେ ଏହା ପୁଣ୍ୟମାଟି । ବିରୋଧ ମଧ୍ୟରେ ବିକାଶ ଏଠାକାର ମାନବଧର୍ମ । ପ୍ରେମ ଓ ପ୍ରରୟ ସ୍ପର୍ଶରେ, ସାହାଯ୍ୟ ଓ ସହାନୁଭୂତିରେ, ସୁଖ ଓ ସମୃଦ୍ଧିରେ ଏ ମାଟି ଯୁଗେ ଯୁଗେ ପ୍ରାରମୟ । ସୋର ମାଟିର ଏହା ହିଁ ଗୌରବ ଓ ସୌରବ । ପ୍ରାଣପ୍ରତିଷ୍ଠା ଓ ପରିଚୟ ।

### ପ୍ରମାଣ ନିମନ୍ତେ ଦେଖିପାରନ୍ତି ।

ଲାଲା ନରେନ୍ଦ୍ର କୁମାର ରାୟଙ୍କ ଦ୍ୱାରା ସଂଗୃହିତ ଶ୍ରୀ ମୋହନ ଚରଣ ଦାସଙ୍କ ଦ୍ୱାରା ପ୍ରକାଶିତ 'ବିବିଧ ରତ୍ନ ସଂଗ୍ରହ' ପୃଷ୍ଠା ନଂ. ୫୯୨ରେ କ୍ୟାପ୍‌ଟେନ୍ ମାର୍ଗନ୍ ଓ କର୍ଣ୍ଣେଲ ଫର୍ଗୁସନ୍ ଦୁଇ ଦଳ ସୈନ୍ୟ ନେଇ ବାଲେଶ୍ୱର, ଜଳେଶ୍ୱର ଓ ସୋର ଅଧିକାର କଲେ ।

In the book "Glimeses of History and Culture of Balasore in Page No. 36 written by Subas Pani, -A hoard of copper coins was discovered at Gandibed, a village at a distance of 11 miles to the south west of Soro Railway Station. They contain the figure of a couchant bull on one side and the name, Sri (Su?) nandasaya. The king has not been identified. As he issued coins in his own name,he was certainly a powerful king rulling in the Soro region in about the 5th- 6th century A. D.

In Page No. 37, Soro was an administrative division in the northern Tahasil in the 6th-7th centuries A. D. It was known under the name Sarephahara and it was a



Digitized by PPRACHIN, SOA

Vishava. In 579-80 Mahaeaja Sambhuyasag of Mudgala family was rulung in Nortern Tahasil. (E. I. XI P.P. - 197-202)

Sasanka, the king of Gouda conquered Kongoda in about 604 A. D. and ruled over the region till his death in about 637 A. D. The details, Somadatta and Bhanudatta ruled northern Tosala as Governors under Sasanka. They issued copper plate grants which were discovered at Soro. Balasore and Kans (Rajguru inscriptions of Orissa, Vol. 1. PT. II-PP-128-142)

In Page No. 43 - The Maratha Faujadar of Balasore tried to accept some brides offered by Morgan in order to held the British for smooth occupation. But before he could do so, he was put in confinement by the Maratha troops. However, after the arrival of British force in the town, the Marathas lost courage and fled away from the port during that night. Captain Morgan occupied the place without any further resistence on 22nd Septmber, 1803. He strengthened the British position at Balasore and posted his trrops outside the town toward off the Maratha attack. A week later he sent two companies of troops under Lt. Slye to drive out Maratha force which had assembled nyear Soro. He was also requred to open communication with Cuttack. Further, reinforcement was sent to him and the combined troops succeded in occupying Soro after defeting a large body of Maratha force on 3rd October, 1803 XXXX.

***



Digitized by PPRACHIN, SOA

## ଏହି ଲେଖକଙ୍କ ଦ୍ୱାରା ଲିଖିତ କେତେକ ପୁସ୍ତକ

୧. ଏ ମାଟିର କାହାଣୀ, ମା' ବାରପଢ଼ା ନାୟିକାଣୀ,
୨୦୦୯ ମସିହା, ପ୍ରକାଶକ : ନଳିନୀକାନ୍ତ ମହାପାତ୍ର

***ଅପ୍ରକାଶିତ ପୁସ୍ତକ :***

୧. ଏ କଲମ ଲେଖେ
୨. ଆପଣମାନେ ବିଚାର କରନ୍ତୁ
୩. ଏ କଲମ ଲେଖି ଚାଲିଛି
୪. ଏ କଲମର ଚିଟଉ
୫. ବିସ୍ମୃତ ଅତୀତ
୬. ଓଡ଼ିଶା ଓ ପାଇକ ପୁଅ
୭. ଆଧ୍ୟାତ୍ମିକ ଚିନ୍ତା ଓ ଚେତନା
୮. କଳାଧନର ସହର
୯. ପିଲାଙ୍କ ଗପ
୧୦. ଲଲାଟ ଲିଖନ
୧୧. ଏ ମାଟିର କଳଙ୍କ

***କାବ୍ୟ***

୧. ପ୍ରିୟା ଓ ପ୍ରଣୟ
୨. ପ୍ରଣୟ ମାଧୁରୀ
୩. ଓଲଟ ଦୁନିଆ
୪. ପ୍ରଣୟ ଚାତୁରୀ
୫. ତ୍ରୀଧାରା (କବିତା)

***

Digitized by PPRACHIN, SOA



ଲେଖକ ଶ୍ରୀ ପ୍ରଫୁଲ୍ଲ କୁମାର ସିଂହଙ୍କର ଜନ୍ମ ସନ - ୧୯୪୦ ମସିହା ଫେବୃଆରୀ ୪ ତାରିଖ ଭଦ୍ରକ ଜିଲ୍ଲାର ବନ୍ତ ଥାନା ଅନ୍ତର୍ଗତ କପାଳି ନଦୀକୂଳ ଦୋଳପଦୀ ଗ୍ରାମରେ, ମାମୁଁଘରେ । କିନ୍ତୁ ତାଙ୍କ ନିଜ ଘର ବାଲେଶ୍ୱର ଜିଲ୍ଲାର ସୋର ଥାନା ଅନ୍ତର୍ଗତ ମୋବାରକପୁର ଗ୍ରାମର ଭୟାସାହିରେ । ପିତାଙ୍କ ନାମ ୰ ଭଗବାନ ସିଂହ ଓ ମାତାଙ୍କ ନାମ ୰ ଚନ୍ଦ୍ରପ୍ରଭା ସିଂହ । କିନ୍ତୁ ପିଲାଦିନେ ମାତା ଚନ୍ଦ୍ରପ୍ରଭାଙ୍କର ମୃତ୍ୟୁ ପରେ ଦ୍ୱିତୀୟ ମାତା ପଦ୍ମିନୀ ସିଂହଙ୍କ ଦ୍ୱାରା ସେ ଲାଳିତ ପାଳିତ ହୋଇଥିଲେ । ତାଙ୍କର ଗୋସେଇଁବାପା ହରିସିଂହଙ୍କ ପିତା- ସନାତନ ସିଂହଙ୍କ ପିତା ଅର୍ଜୁନ ସିଂହ ୧୮୦୩ ମସିହାରେ ସେନାପତି ଥିଲେ । ତାଙ୍କ ପିତା ପଙ୍କଜ ସିଂହ ୧୭୫୭ରୁ ସେନାପତି ଥିଲେ ।

ସୋର ସତ୍ୟାନନ୍ଦ ହାଇସ୍କୁଲ ଓ କଟକସ୍ଥ ରେଭେନ୍ସା କଲେଜରେ ଆଇ. କମ୍. ପରେ ୧୯୬୧ରୁ ବଲାଙ୍ଗୀର ଜିଲ୍ଲାର ବିଜୁଳି ବିଭାଗରେ ୨ ବର୍ଷ ଓ ୧୯୬୩ ରୁ ବଲାଙ୍ଗୀର ଜିଲ୍ଲାପାଳଙ୍କ ଅଧିନରେ ୨ ବର୍ଷ ଚାକିରୀ କରୁଥିବା ସମୟରେ ମା'ଙ୍କ ଦେହାନ୍ତ ହୋଇଯିବାରୁ ତା ୪-୧୧-୧୯୬୪ରେ ଚାକିରୀ ଛାଡ଼ି ଭାଇଭଉଣୀ ଓ ଜମିଜମା ଦେଖାଶୁଣା କରିବା ଲାଗି ଘରେ ରହିଲେ । ୧୯୬୮ରେ ୰ ସଦାନନ୍ଦଜୀଙ୍କ ପରାମର୍ଶ ଓ ଶ୍ରୀଧରଜୀଙ୍କ ଅନୁରୋଧରେ ଭାରତୀୟ ଜନସଂଘର ଅବିଭାଜିତ ବାଲେଶ୍ୱର ଜିଲ୍ଲାର ସଂଗଠନ ଦାୟିତ୍ୱ ନେବା ସହିତ ୧୯୭୧ ନିର୍ବାଚନରେ ସୋରରୁ ବିଧାନସଭା ଆସନ ପାଇଁ ନିର୍ବାଚନ ଲଢ଼ିଥିଲେ । ସୋରକୁ ଏକ ସବ୍‌ଡିଭିଜନ କରାଇବା ଲାଗି ୧୯୭୨ ରେ ସଂଘ ଓ ଏ. ବି. ଭି. ପି. ଓ ପିଲା, ଜନସଂଘର କର୍ମୀମାନଙ୍କୁ ନେଇ ଏକ ଆନ୍ଦୋଳନ କରାଇ, ଜିଲା ପୁନର୍ଗଠନ କମିଟି ଓଡ଼ିଶାର ଅଧକ୍ଷ ବୀଚାରପତି ଆର୍. କେ ଦାସଙ୍କ ରିପୋର୍ଟରେ ଅନୁମୋଦନ କରାଇପରିଥିଲେ । ପରେ ୧୯୮୦ରେ ଭାରତୀୟ ଜନତା ପାର୍ଟି ଗଠନ ହେବାରେ ୰ ସଦାନନ୍ଦଜୀ ଓ ୰ ବାବୁରାଓ ପାଇଧିକରଜୀଙ୍କ ପରାମର୍ଶ କ୍ରମେ ତତ୍କାଳୀନ ବାଲେଶ୍ୱର ଜିଲ୍ଲାର ପ୍ରଥମେ ସଂଗଠନ ଦାୟିତ୍ୱ ନେବା ସହିତ ସେହି ୧୯୮୦ ମସିହା ନିର୍ବାଚନରେ ସୋର ଆସନରୁ ଭାରତୀୟ ଜନତା ଦଳର ପ୍ରାର୍ଥୀ ହୋଇ ବିଧାନସଭା ପାଇଁ ଲଢ଼ିଥିଲେ । ପରେ ଭାରତୀୟ ଜନତା ପାର୍ଟିର ପ୍ରାଦେଶିକ ଓ କେନ୍ଦ୍ର ନେତୃତ୍ୱ ଆର୍, ଏସ୍, ଏସ୍ କେଡର ଭିତ୍ତିକ ସଂଗଠନ ପଦ୍ଧତି ପରିତ୍ୟାଗ କରି ସୁବିଧାବାଦୀ, ଦଳତ୍ୟାଗୀ, ଦୁର୍ନିତୀଗ୍ରସ୍ତ, ନୀତିନୈତିକତାଶୂନ୍ୟ, ଅପରାଧି ଓ ରାଜନୈତିକ ଅନୁପ୍ରବେଶକାରୀ ମାନଙ୍କ ପ୍ରତି ଦଳରେ ଅଧିକ ପ୍ରାଧାନ୍ୟ ଦିଆଯିବାରୁ ଶ୍ରୀ ସିଂହ ନୀରବ ହୋଇଯାଇ ଶୋଷିତ, ଅତ୍ୟାଚାରିତ, ନିର୍ଯ୍ୟାତିତ, ଅବହେଳିତ ଜନସାଧାରଣଙ୍କ ସ୍ୱାର୍ଥରକ୍ଷା ପାଇଁ ଦୁର୍ନୀତି ଭ୍ରଷ୍ଟାଚାର ବିରୋଧରେ ଅଧ୍ୟାପକ ବଂଶୀଧର ଦାଶଙ୍କ ସହାୟତାରେ 'ଭ୍ରଷ୍ଟାଚାର ବିଲୋପ ସଂଗ୍ରାମ ସମିତି' ନାମରେ ଏକ ସ୍ୱେଚ୍ଛାସେବୀ ସଂଗଠନ ଗଢ଼ି ଦୃଢ଼ତାର ସହ କଲମ ଚଳାଇ ବିଭିନ୍ନ ସମ୍ବାଦପତ୍ର ପତ୍ରିକାର ସ୍ତମ୍ଭଲେଖକ ଭାବେ ପରିଚିତ ହୋଇ ବହୁକ୍ଷେତ୍ରରେ ସରକାରଙ୍କୁ ବହୁପ୍ରକାର ପରାମର୍ଶ ଦେଇ ଶାସକ ଦଳ ତଥା ଜନସାଧାରଣଙ୍କ ଦୃଷ୍ଟି ଆକର୍ଷଣ କରୁଛନ୍ତି ।

Digitized by PPRACHIN, SOA